ଇଚ୍ଛାପତ୍ର (ଗଳ୍ପ ସଂକଳନ)
ରାଜ୍ୟବର୍ଦ୍ଧନ ଧଳମହାପାତ୍ର, ମୋବାଇଲ୍ : ୯୪୩୭୪୨୭୬୯୧

---

ପ୍ରକାଶକ : ପଶ୍ଚିମା ପବ୍ଲିକେଶନ୍ସ, ୧୮୮୨, ନୟାପଲ୍ଲୀ, ଭୁବନେଶ୍ୱର
ପ୍ରଚ୍ଛଦ : ଅଶୋକ ମହାନ୍ତି
ମୁଦ୍ରଣ : ଡୁଡୁଲି ପ୍ରୋସେସ୍ ଏଣ୍ଡ୍ ଅଫ୍‌ସେଟ୍ , ଭୁବନେଶ୍ୱର
ପ୍ରଥମ ପ୍ରକାଶ : ୨୦୧୭
ପୃଷ୍ଠ : ୧୨୮
ମୂଲ୍ୟ : ୧୦୦.୦୦

---

**ICHHAPATRA**
Story Collection by Rajyabardhan Dhalmahapatra
Published by Paschima Publications, Bhubaneswar
Cover : Ashok Mohanty
Printed at Duduly Process and Offset, Bhubaneswar
1st Edition : 2017
Page : 128
**Rs. 100.00**

ଯାହାଂକ ଅନୁପସ୍ଥିତ ବି ମୋ ପାଇଁ ସବୁବେଳେ
ଅନୁପମସ୍ଥିତି ହୋଇ ରହିଛି ... ବାପାଂକୁ

# ସୂଚୀପତ୍ର

## ॥ ବାପା ତମେ କେବେ ଯିବ ॥

ମୃତ୍ୟୁ ଅପେକ୍ଷାରେ ବୃଦ୍ଧ ସିଂହଟିଏ ଗୁମ୍ଫା ଭିତରେ ଶୋଇ ରହିବା ଭଳି ବିଛଣା ଉପରେ ପଡି ରହିଥିଲେ ବାପା। ବାପା ତାଂକର ଜନ୍ମ ତାରିଖ ଓ ମସିହାକୁ ସଠିକ୍ କରି ମନେ ରଖିନଥିଲେ ମଧ ତାଂକର ସମସାମୟିକଙ୍କ ବୟସକୁ ହିସାବକୁ ନେଲେ ତାଂକର ବୟସ ସତାଅଶୀ କିମ୍ବା ଅଠାଅଶୀ ହୋଇପାରେ। ଏତଦ୍‌ବ୍ୟତୀତ ମୋ ବଡ଼ ଭଉଣୀର ବୟସ ଏବଂ ସେ ଜନ୍ମ ବେଳକୁ ବାପାଂକର ବୟସକୁ ହିସାବକୁ ନେଇ ଆମେମାନେ ବାପାଂକର ବୟସ ସଂପର୍କରେ ଏକ ହାରାହାରି ସତ୍ୟରେ ପହଂଚୁ। ଗାନ୍ଧୀଙ୍କର ଓଡ଼ିଶା ଆଗମନ ସମୟରେ ଆମ ଗାଆଁଠାରୁ ପାଞ୍ଚ କିଲୋମିଟର ଦୂରରେ ଥିବା ସହୀଦ୍ ପଡିଆରେ ଗାନ୍ଧିଜୀଙ୍କୁ ସ୍ପର୍ଶ କରିବାର ଅପପ୍ରୟାସ କରି ପୋଲିସ୍ ଲାଠିରେ ତାଂକ ହାତ କିପରି ଜଖମ୍ ହୋଇଥିଲା ଓ ସେତେବେଳେ ସେ କେତେ ବର୍ଷର ହୋଇଥିଲେ ତାକୁ ହିସାବ କରି ମଧ ଆମେ ତାଂକର ବୟସ କଳନା କରୁ। ଏ ସବୁ ହିସାବ ମଧରେ ବର୍ଷେ ଦୁଇବର୍ଷର ଫରକ ରହୁଥିଲେ ମଧ, ମୋଟା ମୋଟି ଆମେ ବାପାଂକ କଥାକୁ ଗ୍ରହଣ କରି ନେଉ ଯେ ତାଂକର ବୟସ ଅଠାଅଶୀ ବୋଲି। ସେ ସତାଅଶୀ ହେଉ ଅବା ଅଠାଅଶୀ, ବାପା ତାଂକର ବାର୍ଦ୍ଧକ୍ୟଜନୀତ କୌଣସି ସମସ୍ୟାରେ ଆମକୁ ଆଜିଯାଏଁ ପକାଇ ନ ଥିଲେ। ସେ ଆଜିଯାଏ କେବଳ କର୍ମଠ ନ ଥିଲେ, ଆମ କାହାରି ଉପରେ ନିର୍ଭର ନକରି ତାଂକର ସମସ୍ତ କାର୍ଯ୍ୟକୁ ନିଜେ କରି ଆସିଥିଲେ।

ବାପା ଏକ ଭିନ୍ନ ରଚିର ମଣିଷ। ସେ ଥିଲେ ବିଳାସୀ ଓ ମନୋରଂଜନ ପ୍ରିୟ। ତାଂକ ସଂସାର କହିଲେ ମୋଟେ ବଡ଼ ଟେବୁଲ ସେଟ୍ ରେଡିଓ, ଗୋଟେ ଟି.ଭି., ସଦାସର୍ବଦା ଚ଼'ପାତ୍ର ବସି ରହିବା ପାଇଁ ଗୋଟେ ହିଟର, ଗୋଟେ ଫିତା ଷ୍ଟୋଭ୍ ଇତ୍ୟାଦି। ବାପା ଏକା ରହୁଥିଲେ ସତ ନିଃସଂଗ ନଥିଲେ। ତାଂକ ଚାରିପଟେ ସକାଳୁ ସଂଜ ଯାଏଁ ଭିଡ଼ ଲାଗି ରହୁଥିଲା ଗାଆଁ ଟି.ଭି. ଦେଖା ପ୍ରିୟ କିଛି ଯୁବକଙ୍କର, ରାମାୟଣ ଓ ମହାଭାରତ ସିରିଏଲ୍ ଦେଖାକୁ ନିଶାଭାବେ ଗ୍ରହଣ କରି ନେଇଥିବା କିଛି ବୟସ୍କ ବ୍ୟକ୍ତିଂକର। ମୋଟା ମୋଟି ସମ୍ରାଟୀୟ ଶୈଳୀରେ

ବଂଚୁଥିବା ବାପା କେବେ ଇଚ୍ଛା ପ୍ରକାଶ କରୁନଥିଲେ ତାଂକର ସାଧୀନତା ଓ ସତନ୍ତ୍ର ରଚିକୁ ବଳି ଦେଇ ସହରରେ ଆମେ ରହୁଥିବା ଭଡ଼ା ଘରରେ ଆସି ପଂଜୁରୀବଦ୍ଧ ହେବାକୁ। ତେଣୁ ତାଂକର ସତନ୍ତ୍ର ଜୀବନ ଶୈଳୀ ପାଇଁ ଆବଶ୍ୟକ ପଡୁଥିବା ଅର୍ଥକୁ ଛାଡି ଦେଲେ ଅନ୍ୟ କୌଣସିଥିରେ ସେ ଆମ ଉପରେ ନିର୍ଭରଶୀଳ ନଥିଲେ। ଆମେମାନେ ମଧ୍ୟ ସେତିକି ଦେଇ ସାରି ପୁତ୍ର ହିସାବରେ ଆମର ଦାୟ ଓ ଦେୟରୁ ଆପାତତଃ ନିରାପଦ ଓ ନିଶ୍ଚିନ୍ତ ଥିଲୁ।

ମାତ୍ର ଦୁଇଦିନ ଜ୍ୱରରେ ପଡିବା ପରେ ସେ ହଠାତ୍ ହୋଇପଡିଲେ ଦୁର୍ବଳ। ଖାଲି ଦୁର୍ବଳ ହୋଇପଡିଥିଲେ ବୋଧହୁଏ ସେ ପରୱା କରିନଥାନ୍ତେ। ମାତ୍ର ଗୋଡ ଦୁଇଟି ଯେତେବେଳେ ତାଂକ ଶରୀରର ଭାର ବହନ କରିବାକୁ ଅକ୍ଷମ ହେଲା, ସେ ବାଥ୍‌ରୁମ୍ କିମ୍ବା ଲାଟ୍ରିନ୍ ଯାଇପାରିଲେ ନାହିଁ, ଅଗତ୍ୟା ବାଧ୍ୟ ହେଲେ ନିଜର ସାମ୍ରାଜ୍ୟରୁ ଅବସର ନେଇ ପରିବାର ଭିତରକୁ ଆସିବା ପାଇଁ।

ବାପା ଅସୁସ୍ଥ, ତାହା ପୁଣି ଗୁରୁତର, ଏହି ଖବରଟି ଯଥେଷ୍ଟ ଥିଲା ଆମ ଭାଇ, ଭଉଣୀ, ବନ୍ଧୁବାନ୍ଧବମାନଂକ ପାଇଁ ଯାଇ ଘରେ ପହଂଚିବା ପାଇଁ। ଲୋକ ଅଭାବରୁ ଖାଁ ଖାଁ କରୁଥିବା ଘର ହଠାତ୍ କଳରବରେ ହୋଇ ଉଠିଲା ମୁଖର। ସମସ୍ତେ ନିଜ ନିଜ ପସନ୍ଦ ଓ ବିବେକ ମୁତାବକ, ଫଳ, ମୂଳ, ମିଠା ଓ ହର୍ଲିକ୍ସ ଧରି ପହଂଚୁ ଥିଲେ। ସମସ୍ତଙ୍କର ଘରକୁ ଯିବାର ଉଦ୍ଦେଶ୍ୟ ଯଦିଓ ବାପାଙ୍କର ଅସୁସ୍ଥତା ଥିଲା, କିଂତୁ ଘରେ ପହଂଚିବାପରେ ସମସ୍ତେ ବାପାଂକର ଅସୁସ୍ଥତା ଭୁଲି ପରସ୍ପର ସହ ବହୁବର୍ଷ ପରେ ସାକ୍ଷାତର ସୁଯୋଗ ମିଳିଥିବାରୁ ଖୁସି ହେଉଥିଲେ। ବାପାଂକ ସହ ଔପଚାରିକ ସାକ୍ଷାତ ପରେ ବାପାଂକର ଅସୁସ୍ଥତା ପାଲଟି ଯାଉଥିଲା ଗୌଣ, ମୁଖ୍ୟ ହେଉଥିଲା ନିଜ ନିଜର ସୁଖ ଦୁଃଖ, ପିଲାଂକ ପାଠପଢ଼ା, ସହରରେ ଜମିକିଣା, ଘରତୋଳା, ମୁଦ୍ରାସ୍ପିତି ପାଇଁ ବଢ଼ିଥିବା ଦରଦାମ୍, ଷଷ୍ଠ ବେତନ କମିଶନ୍ ରିପୋର୍ଟରେ ବଢୁଥିବା ଦରମା ଓ ମିଳିବାକୁ ଥିବା ଏରିୟର, ରାଜନିତୀର ହାଲଚାଲ୍, ଦୁଇଟଂକିଆ ଚାଉଳ ଯୋଜନାରେ ଭୋଟରମାନଂକ ଉପରେ ପଡୁଥିବା ପ୍ରଭାବ ଇତ୍ୟାଦି। ସେଥିରେ ଯଦି କିଏ କାହାକୁ ପଚାରି ଦେଲା - ଆସିଲ ତ ପିଲାମାନଂକୁ କାହିଁକି ନେଇ ଆସିଲ ନାହିଁ, ଆଉ କ'ଣ ଜେଜେଙ୍କୁ ଦେଖିପାରିବେ ? ଅବସୋସ କଲାଭଳି ସେ କହୁଥିବ - ଆଜିକାଲି ପିଲାଂକୁ କ'ଣ ଫୁରୁସତ୍ ଅଛି ଖାଲି ପାଠ ପାଠ ହୋଇ ହଜିଗଲାଣି ସେମାନଙ୍କର ଶୈଶବ। ଯୁକ୍ତ ଦୁଇ ବିଜ୍ଞାନ ସରିଲା ତ ସଂଗେ ସଂଗେ କୋଚିଂ ସେଣ୍ଟର ଯାଇ ମେଡିକାଲ କିମ୍ବା ଇଂଜିନିୟରିଂ ପାଇଁ ପ୍ରସ୍ତୁତ ହୁଅ। ପିଲାଟା ରାତି ଦିନ କରି ଏତେ ପ୍ରସ୍ତୁତ ହେଉଥିଲା ହେଲେ ମେଡିକାଲରେ ଦେଖିବା ବେଳକୁ ର୍‍ୟାଙ୍କ ରହିଲା ପାଁଶହ ଚବିଶ୍ ରେ। ଇଂଜିନିୟରିଂରେ ଯେଉଁ ର୍‍ୟାଙ୍କ ଅଛି ଗଭର୍ଣ୍ଣମେଣ୍ଟ କଲେଜ ନ ହେଲେ ବି ଭଲ ପ୍ରାଇଭେଟ୍ କଲେଜରେ ସିଟ୍ ମିଳିଯିବ, ହେଲେ ତା'ର ତ ଏକା

ଜିଦ୍ ଯେ ସେ ମେଡିକାଲ ପଢ଼ିବ। ତେଣୁ ଆଉ ବର୍ଷଟିଏ ପ୍ରସ୍ତୁତ ହେବ।

ତାଙ୍କ ମନ୍ତବ୍ୟ ସରିନଥିବ ଆଉ ଜଣେ ବାହାରି ପଡି କହିବ, ଏଇଟା ନିର୍ବୋଧତା। ତମେ ଶିକ୍ଷିତ ବାପାମାଆ ହୋଇ ପିଲାଟାର ନିର୍ବୋଧତାକୁ ପ୍ରଶୟ ଦେଉଛ କେମିତି ? କ'ଣ ଅଛି ସେ ମେଡିକାଲ ପଢ଼ାରେ ? ଚାକିରୀ କରିବ ତ ? ଦଶବାର ବର୍ଷ ପାଠ ପଢ଼ିସାରି ପୋଷ୍ଟିଂ ପାଇବ ଯାଇଁ କେ.ବି.କେ. ଜିଲ୍ଲାରେ, ସେଥିରେ ଦରମା ପନ୍ଦର ସତର ହଜାର। ଆରେ ଇଂଜିନିୟରିଂ ଚାରିବର୍ଷ ପଢ଼ିବା ଭିତରେ କ୍ୟାମ୍ପସ ପାଇ ପିଲାଏ ଏଇନେ ଲକ୍ଷ ଲକ୍ଷ ଟଂକା ଦରମାରେ ଯାଉଛନ୍ତି। ଭଲ କମ୍ପାନୀ ପାଇଗଲେ ତ ଫରେନ୍‌କୁ  ଚାଲିଲା, ସିଏ ଯେତିକି ଟଂକା ଟ୍ୟାକ୍‌ସ ଦେବ ଇଏ ଏଠି ସେତିକି ଟଂକା ଦରମା ପାଇବନି।

ଆଉ ଜଣେ କହିବ ଯାହା ହେଲେ ବି ମେଡିକାଲ ପାଠର ମର୍ଯ୍ୟାଦା ସତନ୍ତ୍ର।

ସତନ୍ତ୍ର ନା ଚେପା - ଆଜିକାଲି ଯୁଗରେ ପଇସା ଯେଉଁଠି ମର୍ଯ୍ୟାଦା ସେଇଠି।

ଏମିତି ଅଛିଣ୍ଡା ଆଲୋଚନା ଭିତରେ ବରାଦ ହେଉଥିବ ଖାଦ୍ୟର ମେନୁ। ଘଡିକୁ ଘଡି ଆସୁଥିବ ଚା'। ବିନା ଚିନିର ଚା' ଅଛି କି ନାହିଁ ଜଣେ କିଏ ପଚାରି ଦେଇ - ହଉ ଏବେ ଚଳାଇ ଦେବା କହି ଉଠାଇ ନେଉଥିବ କପଟିଏ। ତାଂକର ବିନା ଚିନିର ଚା' କଥା ଶୁଣି ଆଉ ଜଣେ କିଏ ପଚାରିବ କ'ଣ ଡାଇବେଟିକ୍ ହେଲାଣିକି ? ସେ ଉତ୍ତର ଦେଉଥିବ - ନା, ହେଇନି, ଏଇଟା ହେରେଡିଟାରୀ, ବାପାଙ୍କର ଥିଲା ତ, ତେଣୁ ଚାଳିଶ୍ ପରେ ଟିକିଏ ସତର୍କ ହୋଇ ଯାଉଛି।

କ'ଣ ଖାଦ୍ୟରେ ନା ଯୋଗ ଫୋଗ କରୁଛ ?

ନାଇଁମ, ସେ ଯୋଗ ଫୋଗକୁ ବେଳ କାହିଁ, ତୋ' ଭାଉଜ ବହୁତ ଲଗାଇବାରୁ ବାବା ରାମଦେବଙ୍କର ଗୋଟିଏ କ୍ୟାସେଟ୍ ଆଣି ଦୁଇଚାରିଦିନ ସକାଳୁ ଫୁ - ଫାଁ ହୋଇଛି କି ନାହିଁ ସବୁ ବନ୍ଦ।

ମର୍ଣ୍ଣିଂଓ୍ୱାକ୍ କର - ମର୍ଣ୍ଣିଓ୍ୱାକ୍।

ମର୍ଣ୍ଣିଂଓ୍ୱାକ! ପଚାରିଲ, ପଚାରିଲ ତମ ଭାଇଂକୁ ମର୍ଣ୍ଣିଂ କେତେବେଳେ ହୁଏ। ତାଂକ ସକାଳର ରୁଟିନ୍ ତମେ ଜାଣ ? ବାବୁ ଉଠିବେ ଆଠଟାରୁ ସାଢ଼େ ଆଠଟା ଭିତରେ। ଉଠିବାକ୍ଷଣି ଚା' ପିଇବେ। ନିଉଜ୍ ପେପର ଦେଖିବେ। ନିଉଜ ପେପର ଦେଖିସାରି ଆଉ ଗୋଟେ କପ୍ ଚା' ପିଇ ଝାଡ଼ା ଯିବେ, ତା'ପରେ ଆସି ବ୍ରସ୍ କରି ସେଭିଂ ହେବେ। ସେଭିଂ ପରେ ଗାଧୋଇ ପାଧୋଇ ଅଫିସ୍‌କୁ ତରତରରେ ବାହାରୁ ବାହାରୁ ତ ଦଶଟା ବାଜି ସାରିଥିବ, ରକ୍ଷା ହୋଇଛି ଇଏ ତାଂକ ଅଫିସର ବସ୍, ନଚେତ୍ ଲେଟ୍ ଆଟେଣ୍ଡାସ୍‌ରେ ତାଂକର ଚାକିରୀ କେବେଠୁ ଯା'ଇ ସାରନ୍ତାଣି। ଇଏ ପୁଣି ମର୍ଣ୍ଣିଂଓ୍ୱାକ୍ କରିବେ ନା ଯୋଗ ନା ଫୋଗ।

ଆଉ ଜଣେ କହୁଥିବ -ଏଥର ବହୁବର୍ଷ ପରେ ବନ୍ୟା ସମୟରେ ଗାଆଁକୁ ଆସିବାର ସୁଯୋଗ ମିଳିଛି, ସବୁବେଳେ ସହରର ସେହି ଏକା ରୋହୀ, ଭାକୁଡ ମାଛ ଖାଇ ଖାଇ ପାଟି ଛତୁ ଫୁଟିଲାଣି। ଏଥର ଖରସୁଆଁ ଇଲିସି କିମ୍ବା କିଛି ନଈ ମାଛର ବ୍ୟବସ୍ଥା ହେଉ। ଖରସୁଆରେ ଏବେ ଇଲିସ୍ ଜାଲ ପଡୁଛି କି ନାହିଁ ?

ପଡୁଥିବ, କିଏ ଆଉ ଦେଖିଲାକି ? ଶୁଣୁଛୁ ଲୋକ ତ ଜାଲ ସଂଗେ ସଂଗେ ନଈ ଧାରରେ ଚାଲୁଛନ୍ତି, ପଡିଲାକ୍ଷଣି ଅଦରଦର ଦେଇ କିଣି ନେଉଛନ୍ତି। ରେଟ୍‌କୁ କାହାର ପରୱା ନାହିଁ।

ବଡ଼ ଭାଇ କହିବେ ତମେମାନେ ଏବେ ଗାଆଁକୁ ଆସିଛ, ମଜା ଗପସପ ଓ ପାଟି ସୁଆଦ କରିବାକୁ ନା ବାପାଂକ ଭଲମନ୍ଦ ବୁଝିବାକୁ ?

ହଠାତ୍ ନୀରବ ହୋଇଯିବ ଆମ ଭାଇମାନଂକ ଭିତରେ ଚାଲିଥିବା ଆଲୋଚନା।

ଭାଇ କହିବେ ବାପା ତ ଘରଛାଡ଼ି ଇଂଚେ ଘୁଂଚିବାକୁ ରାଜି ନୁହଁନ୍ତି। କାଳେ ଭିଟାମାଟିରେ ମରିପାରିବେନି ଭୟରେ, ତେଣୁ ସହରକୁ ଯାଇ କାରଟିଏ କରି ଡାକ୍ତରକୁ ଡକାଇବାର ବ୍ୟବସ୍ଥା କର।

କେଉଁ ଡାକ୍ତର ଏତେ ବାଟ, ଏ ନଈ ଡଂଗା ପାର ହୋଇ ଦିନଟିଏ କମାଇହେବାକୁ ରାଜି ହୋଇ ଆସିବ ?

ଆଉ କ'ଣ ବାପାଂକୁ ଡାକ୍ତର ନ ଦେଖାଇ ଏମିତି ଘରେ ରଖିଥିବା - ଲୋକେ କ'ଣ କହିବେ ?

ବାପାଙ୍କର ରୋଗ କ'ଣ ଯେ ଡାକ୍ତର ଦେଖାଇବା ? ସିଏ ତ ନିଜେ କହୁଛନ୍ତି ଯେ ସେ ସଂପୂର୍ଣ୍ଣ ଜୀବନଟିଏ ଜିଇଁ ସାରିଲେଣି, ଯଦି ଡାକ୍ତରଂକ ଦ୍ୱାରା ବାର୍ଦ୍ଧକ୍ୟକୁ ରୋକା ଯାଇ ପାରୁଥାଆନ୍ତା ତାହାଲେ କୌଣସି ଧନୀ ଲୋକ ମରନ୍ତେ ନାହିଁ।

ଆଉ ଜଣେ ଭାଇ କହିବ - ଏବେ ବାପାଂକୁ ଡାକ୍ତରଂକ ପାଖକୁ ନେଲେ ସେ କହିବେ ଡାକ୍ତରଖାନା କିମ୍ବା ନର୍ସିଂହୋମ୍‌ରେ ଭର୍ତ୍ତି କରିଦିଅ। ଭର୍ତ୍ତି କରିବାକୁ ମନା ନାହିଁ ଯେ, ହେଲେ ସେଠାରେ କେତେ ଦିନ ରହିବାକୁ ପଡିବ କିଏ ଜାଣେ ? କାହା ହାତରେ ଏତେ ସମୟ ଅଛି ଯେ ବସି ମେଡିକାଲ ଆଟେଣ୍ଡାଣ୍ଟ ହେବ। ଯାହା ପାଖରେ ସମୟ ଅଛି ସେ କରୁ, ମୁଁ ତ ବଡ଼ା କଷ୍ଟରେ ଜନ୍ମାଷ୍ଟମୀ ଶନିବାର ପଡିବାରୁ ଦୁଇଦିନ ଛୁଟି ପାଇଲି, ନଚେତ୍ ଏଇନେ ଯେମିତି ବିଧାନସଭା ଅଧିବେଶନ ଚାଲିଛି, କେତେବେଳେ କେଉଁ ବିଷୟରେ ଷ୍ଟାରଡ୍ କୋଶ୍ଚେନ୍ ଆସିବ କିଏ ଜାଣେ, ସେଥିରେ କ'ଣ ଅଫିସ୍ ଛାଡ଼ି ଆସିବା ସମ୍ଭବ ? ତେଣୁ ମୋତେ ତ ଯେମିତି ହେଲେ ସୋମବାରର ଫାଷ୍ଟ ବସ୍ ଧରି ଭୁବନେଶ୍ୱରରେ ପହଂଚିବାକୁ ପଡିବ। ବାପାଂକୁ ନର୍ସିଂ

ହୋମ୍‌ରେ ରଖିବାକୁ ମୋର ମନା ନାହିଁ, ଯାହା ଖର୍ଚ୍ଚ ହେବ ମୋତେ କହିଲେ ମୁଁ ସେଥିରୁ କିଛି ଦେଇଦେବି, ହେଲେ ମୁଁ ରହି ପାରିବି ନାହିଁ।

ଆଉ ଜଣେ ଭାଇ କହିବ - ଡାକ୍ତର ଦେଖାଯାଉ ବା ଯାହା କରାଯାଉ କିଛି ଲାଭ ହେବନି। ତାଂକର ତ ଆୟୁଷର ସଳିତା ଜଳି ସାରିଲାଣି। ଏବେ ସେଥିରେ ତେଲ ଢ଼ାଳି ଲାଭ କ'ଣ? ଡାକ୍ତର ଦେଖାଇ ଆମେ କେବଳ ଆମ ନିଜ ମନକୁ ସନ୍ତୁଷ୍ଟ କରିବା ସିନା କିଛି ଲାଭ ହେବନି।

ସମସ୍ତଙ୍କ ଭିତରେ ସେହି ଏକାପ୍ରକାର ଚିନ୍ତାଧାରା ଥିଲା ଅବଶ୍ୟ ଔପଚାରିକତା ଦୃଷ୍ଟିରୁ ବଡ଼ ଭାଇ କେବଳ କହୁଥିଲେ ଡାକ୍ତର ଦେଖାଇବା ପାଇଁ। ଶେଷରେ ସେ ବି କହିଲେ - ହଁ, ଏଇଟା ବି ଠିକ୍ କଥା, ବାପାଙ୍କର କୌଣସି ରୋଗ ନାହିଁ ଯେ ଡାକ୍ତର ଦେଖାଇ ଟ୍ରିଟମେଣ୍ଟ କରିବା, ତାଂକର ଏଇ ଅସୁସ୍ଥତା ସଂପୂର୍ଣ୍ଣ ବାର୍ଦ୍ଧକ୍ୟଜନିତ, ଏଥିରେ ଚିକିତ୍ସା ଅପେକ୍ଷା ସେବାର ଆବଶ୍ୟକତା ଅଧିକ ରହିଛି ଯେମିତି ବାପାଙ୍କର ହୃଦ୍‌ବୋଧ ନହୁଏ ଯେ ସେ ଏତେ ଗୁଡିଏ ପୁଅ ଜନ୍ମ କରି ଶେଷକୁ ଉପେକ୍ଷିତ ହୋଇ ଶେଷ ନିଶ୍ୱାସ ତ୍ୟାଗ କଲେ ବୋଲି।

ତମେ ଯାହାକହୁଛ ସତ ଯେ, ହେଲେ ଏ ଅବସ୍ଥା ତାଂକର କେତେଦିନ ଲାଗି ରହିବ କିଏ ଜାଣେ? କାହାର କ'ଣ ଏତେ ଛୁଟି ଅଛି, ଛୁଟି ଥିଲେ ବି ମିଳିବ କି ମାସ ମାସ ଧରି ବାପାଂକ ପାଇଁ ଘରେ ବସି ରହିବାକୁ? ନିଜ ନିଜ ପିଲାମାଂନକ ଜଂଜାଳ ପାଇଁ ଓ ପାଠ ପଢ଼ା ପାଇଁ କୌଣସି ବୋହୂ ତ ରାଜି ନାହାନ୍ତି ଏ ସମୟରେ ମଧ ଗାଆଁରେ ଆସି ରହିବାକୁ। ତା'ପରେ ସେବା କରିବାର ମନୋବୃତ୍ତି ନଥିଲେ କାହାକୁ କ'ଣ ଏ ଦିଗରେ ବାଧ କରି ହେବ? ବଡ଼ ଭାଉଜଙ୍କର ତ ସୂଚିବାଇ ରୋଗ, ସେ ତ ଆସିବା ଦିନ ଠାରୁ ଟିପରେ ଚାଲୁଛନ୍ତି, ଘର ଭିତରେ ବି ଚପଲ ମାଡି ବୁଲୁଛନ୍ତି, ଯେମିତି ବାପା କେଉଁ ଗୋଟେ ସଂକ୍ରାମକ ରୋଗରେ ପୀଡିତ। ସେ ତ ତାଂକ ବିଛଣା ପାଖ ମାଡୁ ନାହାନ୍ତି, ସେ ରହି ସେବା କରିବେ କ'ଣ? ମଝିଆଁ ଭାଉଜ ତ ତାଂକର ପୁଅର ଆଇ.ଆଇ.ଟି. ଏଣ୍ଟ୍ରାନ୍‌ସ ନେଇ ଏତେ ସପ୍ନଅଧୀର ଯେ ସେ ଏଠିକୁ ଆସିବା ଦ୍ୱାରା ତାଂକ ପୁଅର ପାଠପଢ଼ାର କେତେ କ୍ଷତି ହେଲା ତାକୁ କିପରି ଭରଣା କରିବେ ସେଥିପାଇଁ ବ୍ୟସ୍ତ, ତେଣୁ ତାଂକୁ ଏଠାରେ ରହି ସେବା କରିବାକୁ କହିବା ଯାହା ଡିସେମ୍ବର ମାସରେ ଷ୍ଟ୍ରବେରୀ ଖୋଜିବା ତାହା। ଆଉ ଆମ ଦୁଇଜଣଙ୍କର ମିସେସ୍ ତ ଚାକିରି କରିଛନ୍ତି, ଆମ ପରି ସେମାନଙ୍କ ଦଶା, ସେମାନେ କେଉଁଠୁ ରହିପାରିବେ? ସବା ସାନଭାଇ ଏକଥା କହି ସାରି ଅପେକ୍ଷା କରୁଥିଲା ତା' କଥାର ପ୍ରତିକ୍ରିୟା କିପରି ହେଉଛି ଦେଖିବା ପାଇଁ।

ତା'କଥାରେ କୌଣସି ପ୍ରତିକ୍ରିୟା ପ୍ରକାଶ ନ ପାଇବାରୁ ସେ ଆଉ ଟିକେ ଉତ୍ସାହିତ ହୋଇ କହିଲା - ଏହି ସମୟ ପାଇଁ ବଡ଼ ଭଉଣୀ ହିଁ ଏକମାତ୍ର ଫିଟ୍। ତା'ପୁଅ ବୋହୂ ତ ବାହାରେ, ନନା ରିଟାୟାର୍ଡ କଲା ପରେ ତ ଗାଆଁରେ, ସେ ଆସି କିଛିଦିନ ଏଠାରେ ରହି ବାପାଙ୍କର ସେବା କଲେ ତା'ର ସେମିତି କିଛି ଅସୁବିଧା ହେବ ବୋଲି ମୋର କାହିଁକି ହୃଦ୍‌ବୋଧ ହେଉନାହିଁ।

ତୋ' ହୃଦବୋଧ ଉପରେ ତ ଦୁନିଆଁ ଚାଲିନି - ରାଗିଯାଇ କହିଲେ ବଡ଼ଭାଇ। ଯଦି ତା' ମନରେ ବାପାଙ୍କୁ ଶେଷ ସମୟରେ ସେବା କରିବାର ଆଗ୍ରହ ଥାଆନ୍ତା, ତେବେ ସେ କାହିଁକି ଦିନ ଦିଇଟାରେ ଛାଟି ପିଟି ହୋଇ ଏଠାରୁ ପଳାଇ ଯାଇଥାଆନ୍ତା ? ବୁଝିଲୁ ତୋତେ ତୋ' ସମସ୍ୟା ଯେମିତି ବଡ଼ ଲାଗୁଛି। ତାକୁ ତା' ସମସ୍ୟା ବି ସେହିପରି ବଡ଼।

ବାପାଙ୍କ ଅସୁସ୍ଥତା ଏକ ଅଛିଣ୍ଡା ଭାଜକ ପରି ଉଭା ହୋଇଥିଲା ଆମ ପାଖରେ। ଆମେ ଯେତେ ଯାହା ଚିନ୍ତା କଲେ ବି ସମସ୍ୟାର ଭାଗଶେଷ ଛିଣ୍ଡୁ ନ ଥିଲା ଜମ୍ମାରୁ। କେବଳ ଲିକୁଇଡ୍ ଡାଏଟ୍ ଉପରେ ନିର୍ଭର କରୁଥିବା ବାପାଂକୁ କ୍ଷୀର, ହର୍ଲିକ୍ସ କିମ୍ବା ଫଳରସ ଟିକିଏ କରି ଦେବା ପାଇଁ ସେମିତି କୌଣସି ବିଶେଷ ସମସ୍ୟା ନଥିଲା, ସମସ୍ୟା କେବଳ ଥିଲା ତାଂକର ଝାଡ଼ା ଓ ପରିସ୍ରାର। ତାଂକର ଗୋଡ ଦୁଇଟି ଠିକ୍ ଭାବେ କାମ କରୁନଥିବାରୁ ନା ସେ ବାଥ୍ ରୁମ୍‌କୁ ଯାଇ ପାରୁଥିଲେ ନା ତାଂକୁ ଟେକି ଟେକି ନେଇ ଯାଇ ବସାଇ ହେଉଥିଲା। ଏ ସମସ୍ୟାର ସମାଧାନ ପାଇଁ ତାଂକ ପାଇଁ ଦୁଇଟି ପ୍ୟାନ୍ ଅଣାଗଲା, ଗୋଟେ ଝାଡ଼ା ପାଇଁ ଅନ୍ୟଟି ପରିସ୍ରା ପାଇଁ। ଯେହେତୁ ସେ ସଂପୂର୍ଣ୍ଣ ସୁସ୍ଥ ମସ୍ତିଷ୍କରେ ଥିଲେ ଜାଗ୍ରତ ଅବସ୍ଥାରେ ନା ସେ ପ୍ୟାନ୍‌ରେ ଝାଡ଼ା କରି ପାରୁଥିଲେ ନା ପରିସ୍ରା। କେବଳ ଶୋଇରହିଥିବା ସମୟରେ ଅବଚେତନ ଅବସ୍ଥାରେ ଯାହା ତାଂକର ଝାଡ଼ା ପରିସ୍ରା ହେଉଥିଲା। ଝାଡ଼ା ପରିସ୍ରା ହେବାକ୍ଷଣି ସେ ପୁନଃ ସଚେତନ ଅବସ୍ଥାକୁ ଚାଲି ଆସୁଥିଲେ। ସେ ସଚେତନ ହେବା କ୍ଷଣି ଯେଉଁ ଅସହାୟତା ବ୍ୟକ୍ତ କରୁଥିଲେ ଏବଂ ଯେମିତି ନିଜକୁ ଦୋଷୀ ଦୋଷୀ ମନେ କରୁଥିଲେ ତାହା ଦେଖିଲେ ଖୁବ୍ ଦୟା ଲାଗୁଥିଲା। ତେଣୁ ଆମେ ବାପାଂକୁ ମାନସିକ ସ୍ତରରେ ସୁସ୍ଥ ରଖିବାକୁ କହୁଥିଲୁ - ବାର୍ଦ୍ଧକ୍ୟରେ ଏସବୁ ହୁଏ, ତମେ ଏଥିପାଇଁ ଏତେ ମର୍ମାହତ ହେଉଛ କାହିଁକି ?

ଧୀରେ ଧୀରେ ସରିଯାଇଥିଲା ସମସ୍ତଙ୍କ ଛୁଟି। ସାନ ଦୁଇଭାଇ ତ ମଉକା ଦେଖି କେମିତ ଖସିଯିବେ ସେଥିପାଇଁ ଥିଲେ ବ୍ୟଗ୍ର। ସେମାନେ ଚାଲିଗଲେ ମଧ। ଗଲାବେଳେ କେବଳ କହିଲେ - ଯାଉଛୁ, ପୁଣି ସୁବିଧା ଦେଖି ଛୁଟି ଧରି ଆସିବୁ। କୌଣସି ଆକସ୍ମିକ ଆବଶ୍ୟକତା ପାଇଁ ଆମେ ସବୁବେଳେ ପ୍ରସ୍ତୁତ ହୋଇଥିବୁ ଆସିବା ପାଇଁ। ମୁଁ ଭୟ କରୁଥିଲି ଏହି ଆକସ୍ମିକ ଆବଶ୍ୟକତା ଶବ୍ଦଟି ଉପରେ ଭାଇ ହୁଏତ ପ୍ରତିକ୍ରିୟା ପ୍ରକାଶ କରି କିଛି

କହିଦେବେ ଯାହା ଫଳରେ ବାପାଂକ ମନ କ୍ଷୁର୍ଣ୍ଣ ହୋଇପାରେ, ମାତ୍ର ପରିସ୍ଥିତିର ଗମ୍ଭୀରତା ଓ ବାପାଂକ ସାମ୍ନାରେ ସେ ଶବ୍ଦଟିକୁ ସେ ଆଉ ପ୍ରାଂଜଳ କରିବାକୁ ଚାହିଁଲେ ନାହିଁ। ବାପା କେବଳ ସେମାନଂକ ଯିବା ସମୟରେ ଏତିକି କହିଲେ :-

"ଗଳିତ ତୁଷାର ପରି
ଏଇ ଜୀବନ ଯୌବନ
ଆୟୁଷର ଜପାମାଳିରୁ
ସରୁଅଛି ଗୋଟେ ଗୋଟେ ଦିନ"

ମୁଁ ତ ଜାଣିନ ମୋ ଆୟୁଷର ଜପାମାଳିଟିରୁ ଶେଷମାଳିଟିର ଶେଷ ଦିନ କେଉଁଟା, ହେଲେ ଯଦି ଶେଷ ଦିନରେ ତମେମାନେ ସବୁ ଉପସ୍ଥିତି ରହିପାରିଲ ମୁଁ ଖୁସି ହେବି। ଅବଶ୍ୟ ସେ କଥା ତ ଏବେ କହି ହେବନି, କେତେ ଦିନ ଯନ୍ତ୍ରଣା ଭୋଗିବାକୁ ମୋ କପାଳରେ ଲେଖା ହୋଇଛି କିଏ ଜାଣେ ? ହଉ - ତମେମାନେ ଯାଉଛ ଯଦି ଯାଅ।

ଆମେ ଭାବୁଥିଲୁ ଦୀପ ଲିଭିବା ବେଳେ ଯେପରି ପ୍ରଖର ହୋଇ ଜଳେ, ବାପାଂକ ମସ୍ତିଷ୍କର ଏ ପ୍ରଖରତା ତାଂକର ଲିଭିବା ସମୟ ଉପଗତର ସୂଚନା ଦେଉଛି। ତେଣୁ ଆମେ ପରସ୍ପର ଭିତରେ ଆଲୋଚନା କରୁଥିଲୁ - ବାପା, ଆଉ ଅଳ୍ପଦିନର ଅତିଥି, ତେଣୁ ସେ ଯେତିକି ଦିନ ବଂଚିଛନ୍ତି ଅନ୍ତତଃ ସେତିକି ଦିନ ଆମେ ତାଂକୁ କିପରି ସେବାର ଆତିଥେୟତା ଦେଇପାରିବା ସେ କଥା ଚିନ୍ତା କରିବା। ସ୍ୱାଧୀନ ଓ ସ୍ୱାଭିମାନ ନେଇ ଜୀବନ ସାରା ଜିଇଁ ଆସିଥିବା ବାପା ଅନ୍ତତଃ ଶେଷ ମୁହୂର୍ତ୍ତରେ ନଭାବନ୍ତୁ ଯେ ସେ ଅବହେଳିତ ହୋଇଗଲେ ବୋଲି।

ଆମେ ଯତ୍‌ପରୋନାସ୍ତି ଚେଷ୍ଟା କଲୁ ତାଂକୁ ଆବଶ୍ୟକୀୟ ସେବା ଯୋଗାଇବା ପାଇଁ। ମାତ୍ର ବାପା ଜଟିଳ ଅଥଚ ସ୍ଥିର ଅବସ୍ଥାରେ ରହିଗଲେ। ଆମେ ଆଶା କରୁଥିବା ସମୟ ଉପଗତ ହେବାଭଳି କ୍ଷୀଣ ସଂଭାବନା ମଧ୍ୟ ଦିଶୁନଥିଲା। ଏମିତି ଅବସ୍ଥାରେ ଆମେ ଅବା ଆଉ କେତେ ଦିନ ଛୁଟି ନେଇ ପାରିବୁ ? ଛୁଟିରେ ଥିଲେ ମଧ୍ୟ ଚାକିରିର ଜଂଜାଳ ଛାଡୁ ନଥିଲା ଛିଡୁ ନଥିଲା ବି ବାପାଙ୍କର ଜଂଜାଳ। ମୋ ପତ୍ନୀ ମୋର ମାନସିକ ଅବସ୍ଥାକୁ ଠିକ୍ ରୂପେ ପଢ଼ି ନେଇଥିଲେ। ସେ ମୋତେ କହିଲେ - ମନେ ପକାଅ ଓଲଡ ଏଜ୍ ହୋମ ସଂପର୍କିତ କୌଣସି କାହାଣୀ କିମ୍ବା ନାଟକ ଦେଖିଲେ ତମେ ଭାବପ୍ରବଣ ହୋଇ ସେ ବୃଦ୍ଧଙ୍କର ସନ୍ତାନ ମାନଂକୁ ଅଭିଶାପ ଦେଉଥିଲ। ମୁଁ ସେତେବେଳେ ମଧ୍ୟ ତମକୁ କହୁଥିଲି ଭାବପ୍ରବଣ ନ ହୋଇ ବାସ୍ତବତାକୁ ଗ୍ରହଣ କର। ଯେଉଁ ବାପ ପିଲାମାନଂକୁ ମଣିଷ କରିବାର ସ୍ୱପ୍ନ ଦେଖି ତାଂକୁ ମଣିଷ କରିଛି, ଡାକ୍ତର, ଇଂଜିନିୟର କରାଇଛି ଏବଂ ସେମାନେ ବିଦେଶରେ ଅବସ୍ଥାପିତ ହୋଇଛନ୍ତି।

ସେମାନଂକ ହାତରେ କ'ଣ ଏତିକି ସମୟ ଓ ସ୍ୱାଧୀନତା ଅଛି ଯେ ସେମାନେ ଆସି ଉପସ୍ଥିତ ରହି ପାରିବେ ବାପାମାଆଂକର ବୃଦ୍ଧାବସ୍ଥାର ଯତ୍ନ ଓ ଦାୟିତ୍ୱ ନେବାକୁ। ତେଣୁ ସେମାନେ ଗ୍ରହଣ କରି ନେଇଛନ୍ତି ଓଲଡ ଏଜ ହୋମକୁ, ଯେଉଁଟାକି ଚରମ ଆବଶ୍ୟକତା କେବଳ ନୁହଁ ସତ୍ୟ ମଧ୍ୟ। ମନେକର ତମେ ଆଜି କୌଣସି ଜିଲ୍ଲାର କଲେକ୍ଟର କି ଏସ୍.ପି. ହୋଇଥାଆନ୍ତ। ଏ ଚାକିରିରେ ତମେ ଯେତିକି ଛୁଟି ନେଇ ପାରିଲ, ପାରିଥାଆନ୍ତ କି ନେଇ। ସେଠି ତମ ସମ୍ମୁଖରେ କେବଳ ବାପର ଦାୟ ନ ଥାନ୍ତା ଥାଆନ୍ତା ଦାୟିତ୍ୱର ଦାୟ ମଧ୍ୟ। ଲକ୍ଷ୍ୟ କରିଥିବ ଯେତେ ସବୁ ବଡ଼ ବଡ଼ ଲୋକମାନେ ମରୁଛନ୍ତି ବାର୍ଦ୍ଧକ୍ୟଜନିତ ରୋଗରେ, ମଲାବେଳକୁ ଦୀର୍ଘ ସମୟ ଧରି ସେମାନେ ଥାଆନ୍ତି ନର୍ସିଂ ହୋମରେ କାରଣ କିଛି ଅର୍ଥ ବିନିମୟରେ ତାଂକର ପିଲାମାନେ ସେବାକ୍ରୟ କରିଥାଆନ୍ତି। ନଚେତ୍ ସେମାନଂକ ପାଖରେ କ'ଣ ଏତେ ସମୟ ଅଛି ବସି ବାପାମାଆଙ୍କର ସେବା କରିବାକୁ ?

କଥାଟା ଅପ୍ରିୟ ଲାଗୁଥିଲେ ମଧ୍ୟ ସତ୍ୟ ବୋଲି ମୁଁ ଉପଲବ୍ଧି କଲି। ବାପାଙ୍କର ଝାଡ଼ା ପରିସ୍ରା ସଫା କରି ପୁତ୍ରକାର୍ଯ୍ୟ କରିବାର ଧୈର୍ଯ୍ୟ ଧୀରେ ଧୀରେ ଆମ ଭିତରୁ ଶେଷ ହୋଇ ଆସୁଥିଲା। କିଂତୁ ସଂପୂର୍ଣ୍ଣ ସକ୍ରୀୟ ମସ୍ତିଷ୍କରେ ଥିବା ବାପାଂକୁ ନର୍ସିଂହୋମରେ ଭର୍ତ୍ତି କଲାଭଳି ପ୍ରସ୍ତାବ ଦେଲେ, ସେ ନିଶ୍ଚୟ ଉପଲବ୍ଧ କରିବେ ଏଇଟା ତାଂକର ଆରୋଗ୍ୟ କାମନା ପାଇଁ ନୁହେଁ ବରଂ ଦାୟିତ୍ୱ ହସ୍ତାନ୍ତର କରିବାର ବାହାନା ଟିଏ। ଭିଟାମାଟିରେ ମରିବାର ମୋହରେ ତ ପ୍ରଥମ ଦିନରୁ ଆମ ସମସ୍ତଙ୍କର ସେହି ପ୍ରସ୍ତାବକୁ ସେ ପ୍ରତ୍ୟାଖ୍ୟାନ କରିବା ସହ ଆଉ ଖୁବ୍ ଅଳ୍ପଦିନର ଆୟୁଷକୁ ନେଇ ଘର ନ ଛାଡ଼ିବାକୁ ନିଷ୍ପତ୍ତି ନେଇଛନ୍ତି।

ନିଜର ଓ ନିଜ ପତ୍ନୀ ମାନଂକର ଚାକିରିର ବ୍ୟସ୍ତତା ଦର୍ଶାଇ ମୁକୁଳି ଯାଇଥିବା ସାନଭାଇ ଦୁଇଜଣ ଯଦିଓ ଚାଲି ଯାଇଥିଲେ, କିଂତୁ ମୁକୁଳି ପାରିନଥିଲେ ନିଜ ନିଜର ନୈତିକ ଦାୟିତ୍ୱବୋଧରୁ। ତେଣୁ ପ୍ରାୟ ପ୍ରତିଦିନ ଥରେ ଦୁଇଥର ଟେଲିଫୋନ୍ କରି ପଚାରି ବୁଝନ୍ତି ବାପାଙ୍କର ସ୍ୱାସ୍ଥ୍ୟାବସ୍ଥା। ବାପାଙ୍କର ଦେହ କେମିତି ଅଛି ? ପଚାରିବା ବେଳେ ଗୋଟିଏ ଆକୁଳ ଆବେଗ ଦର୍ଶାନ୍ତି ସେମାନେ। ମନ ଭିତରେ ସେମାନଂକର ଥାଏ, ଏପଟୁ ଉତ୍ତର ମିଳନ୍ତା କି ଆଉ ନୁହେଁ, ଜମ୍ମା ଦିନେ କି ଦୁଇଦିନ, ଗୋଟିକିଆ ପକାଇଲେଣି, ଶେଷ ସମୟରେ ଯଦି ଦେଖିବାର ଇଚ୍ଛା ଅଛି ଚାଲିଆସ। ମାତ୍ର ସେମିତି କୌଣସି ଉତ୍ତର ନ ପାଇ ସ୍ଥିତାବସ୍ଥା ବଜାୟ ରହିଛି ଶୁଣି ସେପଟେ ସେମାନଂକ ମନ ଆମ୍ପିଲା ହେବ ସହ କହନ୍ତି – କ'ଣ ଆଉ କରିବା ଜନ୍ମମୃତ୍ୟୁ ତ କାହାର ହାତ କଥା ନୁହେଁ, ଦଣ୍ଡେ ନିମିଷ ଥିଲେ ପ୍ରାଣ, ନନେଇ ପାରେ ଜନ୍ତୁରାଣ। ବାପାଂକର ଆଉ କେତେଦିନ ଭୋଗିବାର ଅଛି କିଏ ଜାଣେ ?

ଏପଟୁ ଉତ୍ତର ଥିବ - ବାପାଂକର କେତେ ଦିନ ଭୋଗିବାର ଅଛି କଥା ନୁହଁ, ଆମର କେତେଦିନ ଭୋଗିବାର ଅଛି ସେ କଥା ଭାବ।

ହଁ - ସେଇଟା ହିଁ ସତ କଥା। ପ୍ରକୃତରେ ବାପା ତ ଭୋଗୁ ନାହାନ୍ତି ଭୋଗୁଛନ୍ତି ଆମେମାନେ।

ବାପାଙ୍କ ପାଇଁ ଦାନ ଦେବାର ବ୍ୟବସ୍ଥା କରିବାକି ?

କ'ଣ ଆରୋଗ୍ୟ କାମନା କରିନା ମୃତ୍ୟୁ ପାଇଁ ?

ଆରୋଗ୍ୟ କ'ଣ ଆଉ ସମ୍ଭବ। ଏବେ କେବଳ ତାଂକର ମୃତ୍ୟୁ କାମନା କରିବା କଥା।

ହଁ - ମୁଁ ବି ଏ ବିଷୟରେ ବୁଝାବୁଝି କରିଥିଲି, ମାତ୍ର ବୁଢ଼ାବୁଢ଼ୀ ଲୋକମାନେ ଉପଦେଶ ଦେଲେ ସ୍ୱାସ୍ଥ୍ୟର ସ୍ଥିର ଅବସ୍ଥା ଯେମିତି ରହିଛି ଦାନ ନେଇସାରି ଯଦି ବେଶିଦିନ ବଂଚିଯିବେ ତେବେ ପରିବାର ପାଇଁ କ୍ଷତି।

ତେବେ କ'ଣ କରାଯାଇ ପାରିବ ?

କେବଳ ମିଳିତ ପ୍ରାର୍ଥନାଟିଏ - ଢ଼େର ବଂଚିଲଣି, ଏବେ ତମେ ଆମକୁ ମୁକ୍ତି ଦିଅ। କୁହ ଯେ କେବେ ଯିବ - କେବେ ଯିବ ବାପା, ବାଶ୍ ଈଶ୍ୱର ନୁହଁ ବାପା ଯଦି ପ୍ରାର୍ଥନା ଶୁଣନ୍ତି ତେବେ ଆମେ ଉଦ୍ଧାର ପାଇଯିବା।

***

## ॥ ଇଛାପତ୍ର ॥

ବାରମ୍ବାର ମୃତ୍ୟୁକୁ ଦଗା ଦେଇ ପୁଣି ସ୍ୱାଭାବିକ ଜୀବନ ପ୍ରକ୍ରିୟାକୁ ଫେରି ଆସିଥିବା ବାପା ଯେ ଏମିତି ଚାଲିଯିବେ, ସେ କଥାକୁ ମୁଁ ବା କାହିଁକି ଭାବି ପାରିଥାଆନ୍ତି।

ମାତ୍ର ଦୁଇଦିନ ତଳେ ବଡ଼ ଭଉଣୀ ଟେଲିଫୋନ୍ କରିଥିଲା - କହିଲା ଗାଆଁକୁ ଯାଇଥିଲି, ବାପା ଭଲ ଅଛନ୍ତି। କେବଳ ଆସିଲା ବେଳେ କହିଲେ ତୋତେ ଟିକେ ଖବର ଦେବାକୁ ଯେ ତୁ ଗଲେ ତୋ' ସହ କ'ଣ କିଛି କଥା ଅଛି।

କ'ଣ ଯେ ଅଛି ? କି କଥା ହେବେ ବାପା ଆଉ ମୋ ସହ ?

ବୁଢ଼ା ଲୋକ, ମନ କ'ଣ ଚାହୁଁଥିବ କହିବାକୁ, ଦେଖି ତୁ ତୋର ସୁବିଧା ଦେଖି ଆସିବୁ। ସେ କହି ନାହାନ୍ତି ଯେ ତୁ ଖବର ପାଇଲା କ୍ଷଣି ଧାଇଁ ଯିବାକୁ।

ହଉ - ମୁଁ ମୋ ସୁବିଧା ଦେଖି ଯିବି, କହିସାରି ରଖିଦେଲି ଟେଲିଫୋନ୍।

ମୋର ଘରକୁ ଯିବା ପାଇଁ କେବେ ସୁବିଧା ହେଉନଥିଲା। କର୍ମ ଜଂଜାଳ ଭିତରେ ମୁଁ ମୁକ୍ତ ସମୟଟିକେ ପାଉନଥିଲି, ଯେ ଛୁଟି ନେଇ ଯାଇ ଘରେ ବୁଲି ଆସିବାକୁ। ଏ କଥା ବି ନୁହଁ ଯେ ମୁଁ ଚାହିଁଥିଲେ ଯାଇ ପାରିନଥାନ୍ତି। ଯିବା ତ ଯିବା, ହେଇ ତ ଏବେ ଆସିଛି, ଯାଇ କରି ବା ମୁଁ କ'ଣ କରି ପକାଇବି ଯେ, କିଛି ଦିନ ଯାହା ମାନସିକ ଯନ୍ତ୍ରଣା କେବଳ ପାଇବି। ନା କିଛି ସେଠାରେ କରି ହେବ ବାପାଂକ ପାଇଁ ନା ତାଂକୁ ଏଠାକୁ ଆଣିହେବ ? ଆଣି ହୁଅନ୍ତା ନି କାହିଁକି, ଆଣି ହୁଅନ୍ତା, ହେଲେ ବାପା ତ ଏକବାର ନାରାଜ ଘର ଛାଡ଼ି କେଉଁଠି ଆସି ରହିବା ପାଇଁ। ଗାଆଁରେ ସକଳ ଅସୁବିଧା ସତ୍ତ୍ୱେ ସେ ସେଠାରେ ରହିବାକୁ ପସନ୍ଦ କରନ୍ତି ଅଥଚ ସବୁ ସ୍ୱାଛନ୍ଦ ଯୋଗାଇ ଦେବାର ପ୍ରତିଶୃତି ଓ ସମ୍ଭଳ ସତ୍ତ୍ୱେ ସେ ରାଜି ହୁଅନ୍ତିନି ଆମ ପାଖରେ ଆସି ରହିବାକୁ। ସବୁବେଳେ କୁହନ୍ତି, ମୋର ଶତାୟୁ ହେବାର ଯୋଗ ଅଛି, ସିଂହ ରାଶିରେ ଏଇନେ ଟିକିଏ ଖରାପ ଯୋଗ ଅଛି। ଗ୍ରହ ଚଳନର ବେଳା ସରିସରି ଆସିଲାଣି। ଆଉ ଅଳ୍ପ ଦିନ ପରେ ଦେହ ଭଲ ହୋଇଯିବ। ଦେହ ଭଲ ହେବା ପରେ ତୋ ପାଖକୁ ଯିବି। ପର ଜାଗା, ପରଦେଶରେ କ'ଣ ଯାଇ ଏମିତି ଘୋଷାରୀ ଘୋଷାରୀ ହୋଇ ରହିହେବ ?

ବାପାଂକର ଶତାୟୁ ହେବାର ଆକାଂକ୍ଷା ମୃତ୍ୟୁକୁ ଭୟକରି ନୁହେଁ ଜୀବନକୁ ଅତି ମାତ୍ରାରେ ଭଲ ପାଉଥିବାରୁ ଥିଲା । ତାଂକର ଜୀବନକୁ ଏମିତି ଭଲ ପାଇବା ପଛରେ ପ୍ରଚଣ୍ଡ ସୁଖ ଓ ସାଚ୍ଛନ୍ଦ ଛାଡ଼ି ଯିବାର ମୋହ ନ ଥିଲା, ଥିଲା ନିଜ ବଂଶ ବୃକ୍ଷର ସଫଳତା ଦେଖିବାର ଦୁର୍ବାର ପିପାସା । ଅତି ଭାବ ପ୍ରବଣ ହୋଇ କୁହନ୍ତି - ଜୀବନରେ ଏତେ ସଂଘର୍ଷ କରିଛି, ଦେଖିବିନା ନାତିମାନେ ମୋର କେଉଁ ସୋପାନକୁ ଯାଉଛନ୍ତି ? ସେ ସବୁ ନଦେଖିଲା ଯାଏ ଯମକୁ ବି ମୁଁ ମନା କରିଦେବି ମୋତେ ସ୍ପର୍ଶ କରିବାକୁ ।

ଆମେ ଜାଣୁଥିଲୁ ବାପାଂକର ବଂଚି ରହିବାର ଇଚ୍ଛା ଶକ୍ତି ହୁଏତ ତାଂକୁ ଆଉ କିଛି ବର୍ଷ ଟାଣି ନେଇ ପାରେ, ହେଲେ ଶତାୟୁ ହେବା ପର୍ଯ୍ୟନ୍ତ ନୁହେଁ । ସେ ବଂଚି ରୁହନ୍ତୁ । ହେଲେ କର୍ମ ଚଂଚଳ ହୋଇ ଏହାହିଁ କେବଳ ଥିଲା ଆମ ମାନଂକର ଇଚ୍ଛା । ଏମିତି ଯଦି ବିଛଣାରେ ପଡି ରହିବେ ହୁଏତ ଜୀବନ ତାଂକ ପାଇଁ ଦୁଃର୍ବିସହ ହୋଇ ନ ପାରେ ମାତ୍ର ତାଂକର ବଂଚିରହିବାଟା ଆମ ପାଇଁ ନିଶ୍ଚିତ ଦୁଃର୍ବିସହ ହୋଇପଡିବ ।

ଗତଥର ବାପାଂକ ଦେହ ଖରାପ ବେଳକୁ ଯାଇଥିଲି ଗାଆଁକୁ । ଜ୍ୱର ଜନୀତ ଦୁର୍ବଳତା ପାଇଁ ସେ ଉଠିପାରୁନଥିଲେ ବିଛଣାରୁ । ମୁଁ ଘରେ ପହଂଚିବା ବେଳକୁ ଅବଶ୍ୟ ତାଂକର ଆଉ ଜ୍ୱର ନଥିଲା, କିଂତୁ ଦୁର୍ବଳତା ଥିଲା ଏବଂ ସେଥିସହ ବାରମ୍ବାର ଝାଡ଼ା ଯିବାକୁ ପଡୁଥିଲା । ଝାଡାଟା ସେ ଜ୍ୱର ସମୟରେ ଖାଇଥିବା ଆଣ୍ଟିବାୟୋଟିକର ପ୍ରଭାବ ବୋଲି ଆମେ ଜାଣୁଥିଲୁ । ଜ୍ୱର ହେବା କିମ୍ବା ଝାଡା ହେବା ବାର୍ଦ୍ଧକ୍ୟର ପ୍ରଭାବ ନୁହେଁ, ଏହା ଯେ କୌଣସି ଭଲ ବ୍ୟକ୍ତିକୁ ମଧ ହୋଇପାରେ । ମାତ୍ର ଆମକୁ ସବୁଠୁ ଆଶ୍ଚର୍ଯ୍ୟ କରୁଥିଲା ତାଂକର ସ୍ମୃତି ବିଭ୍ରମ ରୋଗ । ଆମେ ସମସ୍ତେ ପିଲା ବେଳୁ ଜାଣିଥିଲୁ ତାଂକର ଧୀଶକ୍ତି ସହ ସ୍ମରଣ ଶକ୍ତି ମଧ ପ୍ରବଳ । ବିଶ୍ୱର ସମସ୍ତ ରାଷ୍ଟ୍ରର ଇତିହାସ, ଭୂଗୋଳ ଏବଂ ରାଜନୀତିର ଘଟଣାବଳୀ ତାଂକ ମୁହେଁ ମୁହେଁ ଥିଲା । ଆମମାନଂକର କେତେବେଳେ ଯଦି କୌଣସି କଥାରେ ଶଂଶୟ କିମ୍ବା ଯୁକ୍ତି ହେଉ ଥିଲା ତେବେ ତା'ର ସମାଧାନ ପାଇଁ ବାପାଂକୁ ପଚାରି ବୁଝିବାର ନିଷ୍ପତ୍ତି ନେଉଥିଲୁ । ବାପା ଯେ କେବଳ ତାକୁ କହି ଦେଉଥିଲେ ତାହା ନୁହଁ, ସେ ପ୍ରଶ୍ନ ସହ ଜଡିତ ଏମିତି ବହୁତଥ୍ୟ ଦେଉଥିଲେ ଯେ ଯାହାକୁ ଆମେ କେବେ କୌଣସି ବହିରୁ ମଧ ପାଇ ପାରିନଥାନ୍ତୁ । ଏମିତି ଅସାଧାରଣ ସ୍ମୃତି ଶକ୍ତିର ଅଧିକାରୀ ବାପାଂକର ଯେ ସ୍ମୃତି  ବିଭ୍ରମ ହେଉଛି ତାହାହିଁ ଆମକୁ ଆଶ୍ଚର୍ଯ୍ୟ କରୁଥିଲା । ସ୍ମୃତି ବିଭ୍ରମ କହିବାଟା ବୋଧହୁଏ ସଂପୂର୍ଣ୍ଣ ଠିକ୍ ନୁହଁ, କାରଣ ତାଂକର ସ୍ମୃତି ବିଭ୍ରମ ସହ ବେଳେ ବେଳେ ପ୍ରଖର ସ୍ମରଣ ଶକ୍ତି ମଧ ଆସି ଯାଉଥିଲା । ସେ ସ୍ମରଣଶକ୍ତି ମୁହୂର୍ତ୍ତରେ ସେ ଗୀତା, ଉପନିଷଦ ସହ ଗୀତାଂଜଳୀ, ନାଜରୁଲଙ୍କ କବିତା, ରାଧାନାଥ, ଦୀନକୃଷ୍ଣ, ଭଂଜ,ମେହେର ଇତ୍ୟାଦିଙ୍କ କବିତାକୁ ଏମିତି ବାଖ୍ୟା କରୁଥିଲେ ଯେ ଆମେ ଆଶ୍ଚର୍ଯ୍ୟ ହେଉଥିଲୁ  ସେ ଏତେ କଥା କେମିତି ମନେ ରଖିପାରିଛନ୍ତି ବୋଲି । ଟ୍ୟୁନିଂ ଠିକ୍ ନଥିବା

ରେଡିଓରେ ଯେପରି ବିଭିନ୍ନ କେନ୍ଦ୍ରର କାର୍ଯ୍ୟକ୍ରମ ଓଭରଲ୍ୟାପିଂ ହୋଇ ଲାଗିଯାଏ ଠିକ୍ ସେମିତି ଥିଲା ତାଂକର ପ୍ରଳାପ। ହଠାତ୍ ସ୍ମୃତି ପ୍ରଖର ରାଜ୍ୟରୁ ସେ ଚାଲିଯିବେ ସ୍ମୃତି ବିସ୍ମୃତ ରାଜ୍ୟକୁ। ହଠାତ୍ ପ୍ରଶ୍ନଟିଏ ପଚାରିବେ - ଏବେ ମୁଁ କେଉଁଠି ଅଛି ?

ଆମ ଘରେ ଅଛନ୍ତି।

ଆମ ଘରମାନେ କାହା ଘର ?

ଆମ ଘର ପରା - କାହା ଘର କ'ଣ ?

ଆମ ଘର କ'ଣ ଝାଡ଼ଖଣ୍ଡରେ ?

ଆମେ ତାଂକୁ ବିସ୍ମୟ ହୋଇ ଚାହିଁବା ବେଳେ ସେ କହିବେ - ହଁ ମୁଁ ସେଇଆ ଭାବୁଛି, ଏଇଟା ଝାଡ଼ଖଣ୍ଡ ନିଶ୍ଚୟ, ଏଠି ବହୁତ ଖଣି ଖାଦାନ୍ ନା ? ଶୁଣୁନା - ଶୁଣ, କେମିତି ବ୍ଲାଷ୍ଟିଂ ହେବାର ଶବ୍ଦ। ଓହୋ - ଏ ଶବ୍ଦରେ ମୁଁ କାଲି ରାତିସାରା ଶୋଇ ପାରିନି। ଏ ଖଣିଖାଦାନ୍ ସବୁ ତାଂକ ଅର୍ଥନୀତି ସହ ଜଡ଼ିତ, କିଏ ଚାହିଁଲେ ବା ନଶୋଇ ପାରିଲେ କ'ଣ ସେମାନେ ବନ୍ଦ କରି ପାରିବେ ? ଏଠୁ ଘର ବଦଳାଇ ଦେଲେ ହୁଅନ୍ତାନି ? ତୁ ପରା କହୁଥିଲୁ ହରିଦ୍ୱାର ତୋତେ ଖୁବ୍ ଶାନ୍ତି ଦେଇଥିଲା ବୋଲି, ସେଠାରେ ଗୋଟେ ଘର ନେଉନୁ ଚାଲିଯିବା।

ଭାଇ ବାପାଂକର ଏମିତି କଥାବାର୍ତ୍ତା ଶୁଣି କହିବେ - ବାପାଂକର ଆଉ ଜଗତ ସହ କନେକ୍‌ସନ୍ ହୋଇଗଲା।

ମୋ ବଡ଼ ଭଉଣୀ ଆଉ ଟିକିଏ ଦାର୍ଶନିକ ହୋଇ କହୁଥିଲା - ଦୀପ ଲିଭିବା ବେଳେ ଯେପରି ଖୁବ୍ ପ୍ରଖର ହୋଇ ଜଳେ, ବାଂପାଙ୍କର ସ୍ମୃତି ପ୍ରଖରତା ଏବଂ ସ୍ମୃତି ବିଭ୍ରମ ଦୀପ ଲିଭିବାର ସୂଚନା ଦେଉଛି।

ମୁଁ ସବୁ ଶୁଣି ଗମ୍ଭୀର ରହି ଭାବୁଥିଲି - ବାପାଂକର ବିହ୍ୱୋଳ ସ୍ମରଣ ମୁହୂର୍ତ୍ତରେ ତାଂକ ଠାରୁ କିଛି ଗୋପନୀୟ ସତ୍ୟକୁ ହାସଲ କରାଯାଇପାରେ। ତେଣୁ ସେ ଯେତେବେଳେ ଏପଟ ସେପଟ ଗପିବା ଆରମ୍ଭ କରନ୍ତି ମୁଁ ପଚାରେ - ବାପା ତମ ସ୍ମୃତିରେ ବୋଉର କଥା ମନେ ପଡୁଛି ?

ସେ କିଛି ସମୟ ଗୁମ୍ ରହି କୁହନ୍ତି - ତିରିଶବର୍ଷ ଖୁବ୍ ଦୀର୍ଘ ସମୟ। ସେ ହୁଏତ କେଉଁଠି ଜନ୍ମ ନେଇ ସାରିଥିବ ବୋଲି ମୁଁ ଭାବୁଥିଲି କିଂତୁ ମୋ ଭାବନାଟା ଭୁଲ ଥିଲା।

କ'ଣ ଏଯାଏଁ ଜନ୍ମ ନେଇନି ବୋଉ ?

ନା -

ତମେ କେମିତି ଜାଣିଲ ?

କେମିତି ଜାଣିବି କ'ଣ, କାଲି ରାତିରେ ପରା ଆସିଥିଲା। ପରଲୋକ ପରି ଦୂରରୁ ଥାଇ ପଚାରିଲା - କ'ଣ ବେଶି କଷ୍ଟ ହେଉଛି ? ମୁଁ ଭାବୁଥିଲି ଏ ପ୍ରଶ୍ନରେ ରାଗିବି ବୋଲି, ହେଲେ ରାଗି ପାରିଲି ନାହିଁ।

କାହିଁକି ରାଗି ପାରିଲ ନାହିଁ ?

ବଂଚିଥିବା ବେଳେ ମୁଁ ତାକୁ ସୁଖ ଦେଇ ପାରିନଥିଲି, ସବୁବେଳେ ଦୂରଦୂର - ମାର୍ ମାର୍ କରୁଥିଲି, ଏବେ ମଲା ପରେ, ପୁଣି ମରିବାର ତିରିଶ ବର୍ଷ ପରେ ତାକୁ କାହିଁକି କଷ୍ଟ ଦେବି ଭାବିଲି। ମୁଁ ଭାବୁଛି ତାର ବୋଧେ ସେ ଜଗତରେ ରହଣୀର ମିଆଦ ସରି ସରି ଆସିଲାଣି, ଏବେ ପୁର୍ନଃଜନ୍ମ ନେଇପାରେ।

କେମିତି ଜାଣିଲ ତମେ ?

ଏଇଟା ଅତି ସାଧାରଣ କଥା - ମୁଁ ଯେତେ କ୍ରୋଧୀ ବା ବଦ୍‌ରାଗୀ ହେଲେବି ତା'ର ସ୍ୱାମୀ ନା, ସେ ମୋ ଦେହମୁଣ୍ଡରେ ହାତ ବୁଲାଇବା ଦୂରର କଥା ପାଞ୍ଚ ହାତ ଦୂରରେ ଥାଇ କଥା ହେଉଥିଲା। ଭାବୁଥିଲି ରାଗିକି ପଚାରିବି - ମୋ କଷ୍ଟ ଲାଘବ ପାଇଁ ଆସିଥିଲୁ ନା ମୁଁ କେମିତି କଷ୍ଟ ପାଉଛି ଦେଖିକରି ଖୁସି ହେବାକୁ ଆସିଥିଲୁ ? ପୁଣି ଭାବିଲି - ନାଥାଉ, ଆଉ ଏବେ କେଉଁ ଅଧିକାରରେ ପଚାରିବି ?

ଆଚ୍ଛା ଆମ ବୋଉ କଥା ଛାଡ଼ - ତମ ବାପା କିମ୍ବା ବୋଉ କ'ଣ ଆସୁଛନ୍ତି ?

ହଁ - ଆସୁଛନ୍ତି, ଶ୍ରଦ୍ଧାରେ ନୁହଁ ଦୟାରେ। ବାପାଂକରତ ମୁଁ ଥିଲି ବିଦ୍ରୋହୀ ପୁତ୍ର ଏବଂ ବୋଉର ମୋ ପ୍ରତି ଥିଲା ଭୀଷଣ ଭୟ। ତେଣୁ ସେମାନେ ଆସିଥିଲେ ମଧ ପରଲୋକ ପରି ମୋତେ ଦେଖିଲେ ଓ ଚାଲିଗଲେ। ବୋଉ କେବଳ ଗଲାବେଳକୁ ମୋ ମୁଣ୍ଡକୁ ଟିକେ ସାଉଁଳେଇ ଦେଇ କହିଲା - ଧୈର୍ଯ୍ୟ ଧରି, ଏ କଷ୍ଟ ଅବଶ୍ୟ ଭୋଗିବାକୁ ପଡିବ।

ଏମିତି ବାପା ଗପୁଥିଲେ ଓ ଆମେ ସମସ୍ତେ ଶୁଣୁଥିଲୁ। ବାପାଂକର ଏମିତି ଗପିବା ଭିତରେ ସମସ୍ତେ ଯେଝା ଯେଝା କାମରେ ଚାଲିଗଲେ, ରହିଗଲି ମୁଁ ଏକା। ନିରୋଳା ମୁହୂର୍ତ୍ତରେ ବାପାଂକ ଠାରୁ କିଛି ଗୋପନୀୟ ସତ୍ୟ ହାସଲ ପାଇଁ ମୁଁ ପଚାରିଲି - ସମସ୍ତେ କହୁଛନ୍ତି ତମେ ଢେର ଟଂକା ପଇସା, ସୁନା ରୁପା ରଖିଛ ବୋଲି, ତାକୁ କେଉଁଠି ରଖିଛ ନା କାହାକୁ ଦେଇ ଦେଲଣି ?

ମୋର ଏ ପ୍ରଶ୍ନଟିରେ ବାପା ପ୍ରକୃତିସ୍ଥ ହୋଇ ପଡ଼ିଲେ। ଅନ୍ୟ ଜଗତରେ ଲାଗିଥିବା କନେକ୍‌ସନ୍ ତାଂକର କଟିଗଲା। ସେ କିଛି ସମୟ ମୋ ମୁହଁକୁ ସ୍ଥିର ହୋଇ ଚାହିଁବା ପରେ କହିଲେ ଏ ପ୍ରଶ୍ନ ତୁ କାହିଁକି ପଚାରିଲୁ ?

ତମର ଧନକୁ ଲୋଭ କରି ମୁଁ ଏ ପ୍ରଶ୍ନ ପଚାରୁନାହିଁ, କେବଳ ମୁଁ ଜାଣିଥାଆନ୍ତି। ଲୋକ କହୁଛନ୍ତି ତମର ଏତେ ବଡ଼ ବେପାର ସାଂଗକୁ ମହାଜନୀ ଥିଲା। ବହୁତ ରଖିଛ ବୋଲି।

ଲୋକଂକର ଭାବିବାଟା ଅପ୍ରାସଂଗିକ ନୁହେଁ କିମ୍ବା ଭୁଲ ମଧ ନୁହେଁ। ତେବେ ତୋ'ର ଏ ପ୍ରଶ୍ନ ମୋତେ ଗୋଟିଏ ସନ୍ଦେହରେ ପକାଉଛି ଯେ ତୁ ବୋଧହୁଏ ଭାବିଲୁଣି ଯେ ମୋର

ଶେଷ ସମୟ ଆସିଗଲାଣି । ତେଣୁ ସବୁ ତଥ୍ୟ ହାସଲ କରିନେବୁ । ମୋର ଶତାୟୁ ହେବାର ଅଛି । ମୁଁ ଜାଣିପାରିବି ଠିକଣା ବେଳ । ସେତେବେଳେ ମୁଁ ଖୋଲିବି ମୋ ସଂଚୟର ଗୁମର, ଏବେ ନୁହଁ । ହେଲେ ଏହା ସତ୍ୟ ଯେ ସେଥିରୁ କିଛି ବରବାଦ୍ ହୋଇଗଲା, ଅପାତ୍ରରେ ପଡିଗଲା । ମୁଁ କ'ଣ ଜାଣିଥିଲି ମଣିଷର ସ୍ୱରୂପ ଏପରି ବଦଳି ଯିବ ବୋଲି, ତାହା ପୁଣି ନିଜର ପିତା ପ୍ରତି । ଈଶ୍ୱର ତାକୁ ସଦ୍‌ବୁଦ୍ଧି ଦେବେ, ସେ ଭୁଲ୍ ବୁଝିବ ନିଶ୍ଚୟ ।

ତମର ଭୟ ହେଉଛି କି ବାପା, ମୁଁ ଏବେଠାରୁ ଜାଣିଗଲେ ତମର ସଂଚିତ ଧନର ପରିମାଣ, ଲୋଭ କରି କିଛି ମାଗିବି ବୋଲି ?

ନା, ସେ ଭୟ ମୋର ନାହିଁ ଏବଂ ସେ ଧନର ଆବଶ୍ୟକତା ମଧ୍ୟ ତୋର ନାହିଁ । ଠିକଣା ସମୟରେ ତୁ ଜାଣିବୁ । ସେ କଥା ଜାଣିବା ପାଇଁ ତୁ ଆଗ୍ରହ ପ୍ରକାଶ କଲୁ ଭଲ କଥା ମାତ୍ର ତା' ପାଇଁ ଉତ୍‌କଣ୍ଠିତ ହେବୁ ନାହିଁ ।

ମୋତେ ବି ତମେ ସେହି ଅପାତ୍ର ପର୍ଯ୍ୟାୟରେ ରଖିଛ ତେବେ ?

ଏଠି ପାତ୍ର - ଅପାତ୍ରର କଥା ଉଠୁନି । କଥା ରହିଛି ଆବଶ୍ୟକତାର । ମେଘ ବର୍ଷିବା ବେଳେ ସବୁଠି ବର୍ଷେ, ସମୁଦ୍ରରେ,ପାହାଡ଼ରେ,କ୍ଷେତରେ, ନଦୀ, ନାଳ, ନର୍ଦ୍ଦମାରେ । ସମୁଦ୍ରର ବକ୍ଷ ବର୍ଷା ପାଣିରେ ସ୍ନାତ ହୁଏନି କି ନର୍ଦ୍ଦମା ପାଇଁ ବର୍ଷାର କୌଣସି ଆବଶ୍ୟକତା ନଥାଏ । ହେଲେ ମେଘ କ'ଣ ବର୍ଷିବାର ଧର୍ମ ଭୁଲି ସେମାନଙ୍କୁ ବାଦ ଦେଇଦିଏ ? ତେଣୁ ଏଠାରେ ପାତ୍ର-ଅପାତ୍ରର କଥା ନାହିଁ । କଥା ରହିଛି ସମୟର । ସେ ସମୟ ଆସିଲେ ତୁ ବଳେ ଜାଣିବୁ ଏବଂ ଆଶା କରୁଛି ତୋ' ପ୍ରାପ୍ୟ ବି ତୁ ପାଇବୁ ।

ହେଲେ ତମେ ଯାହା ରଖିଛ ତାହା ତ ସ୍ଥାବର ନୁହେଁ, ଅବସ୍ଥାବର ସମ୍ପତ୍ତିରେ ମୂଷା ଲାଗିବାର ଭୟ ଅଧିକ ।

ନା - ମୋ ଅସ୍ଥାବର ସମ୍ପତ୍ତିରେ ମୂଷା ଲାଗି ପାରିବେ ନାହିଁ । ତମ ମାନଂକୁ ଯାହା ଦୃଶ୍ୟ ତାହା ମୋର ସ୍ଥାବର ସମ୍ପତ୍ତି, ଯାହା ଅଦୃଶ୍ୟ ମୋର ଅସ୍ଥାବର । ସେହି ଅଦୃଶ ହିଁ ରହସ୍ୟ, ତାହା ମୁଁ ବଂଚି ଥାଉଁ ଥାଉଁ ଖୋଲିବି କିପରି ? ରହସ୍ୟର ଉନ୍‌ମୋଚନ ହିଁ ସତ୍ୟ ଏବଂ ସତ୍ୟ ହିଁ ଚିରଦିନ ରହସ୍ୟମୟ । ତୋ'ର ସେ ସତ୍ୟ ସହ ସାମ୍ନା ହେବ କିନ୍ତୁ ଏବେ ନୁହଁ । ସେ ସମୟ ଆସିଲେ ମୁଁ ତୋତେ ବଳେ ଡାକି କହିଦେବି, ସେଥିପାଇଁ ତୋ'ର ଉଦ୍‌ବିଗ୍ନ ହେବାର କିଛି ନାହିଁ ।

ବାପା ଫେରିନଥିଲେ ସ୍ୱାଭାବିକତାକୁ କିଂତୁ ସରିଗଲା ମୋର ଛୁଟିର ମିଆଦ । ମୁଁ ଫେରିଆସିଲି ମୋ କର୍ମକ୍ଷେତ୍ରକୁ । ଅବଶ୍ୟ ବାପାଂକ ଅସୁସ୍ଥତା ଅଧିକ ଦିନ ରହିଲା ନାହିଁ । ସେ ସୁସ୍ଥ ହୋଇଗଲେ ଏବଂ ଆମ ସମସ୍ତଂକ ପୂର୍ବାନୁମାନକୁ ଭୁଲ ପ୍ରମାଣିତ କରି ସେ ସ୍ୱାଭାବିକ ଜୀବନଚର୍ଯ୍ୟାକୁ ଫେରିଲେ ।

ଏଇତ ମାତ୍ର ଦୁଇଦିନ ତଳର କଥା, ବଡ଼ ଭଉଣୀ ଟେଲିଫୋନ୍ କରିଥିଲା ବାପା ଭଲ ଅଛନ୍ତି, ଆସିବା ବେଳେ କହିଥିଲେ ତାକୁ ମୋତେ ଖବର ଦେଇ ଦେବାକୁ ଯେ ମୋ ସହ ତାଂକର କିଛି କଥା ଅଛି। ମୁଁ ବିତୃଷ୍ଣା ମିଶ୍ରିତ କ୍ରୋଧରେ ଏଡାଇ ଯାଇଥିଲି ସେ ଖବରକୁ ଯେ ମୋ ସହ କି କଥା ଅଛି ତାଂକର ? ସେ ତ ସମୟ ଦେଇଛନ୍ତି ଓ ମୁଁ ସେ ସମୟକୁ ଅପେକ୍ଷା କରିଛି। ରଖିଥାଆନ୍ତୁ ସେ ତାଂକର ଗୋପନ ରହସ୍ୟ ତାଂକ ପାଖରେ। ମୁଁ ଜାଣେ ସେ ରହସ୍ୟ ଖୋଲିବା ବେଳକୁ ଆଉ କିଛି ନଥିବ ବରଂ ଭଲ ସେ ସାଇତି ରଖିଥିବା ରହସ୍ୟ ଚିରଦିନ ରହସ୍ୟମୟ ହୋଇଥାଉ।

ଗତକାଲି ରାତିରେ ମାତ୍ର ଖବର ପାଇଲି ଯେ ତାଂକ ଦେହ ଭଲ ନାହିଁ। ଖବର ପାଇବା ବେଳକୁ କୌଣସି ଗାଡିର ସମୟ ନଥିଲା, ଏତେ ରାତିରେ ଡ୍ରାଇଭର ଠିକ୍ କରି କାର ଧରି ଯିବାଟା ମଧ୍ୟ ନିରାପଦ ନଥିଲା। ଖବରପାଇବା ପରେ ଦ୍ୱନ୍ଦରେ ପଡି ପଚାରିଲି - କ'ଣ ଏ ରାତିରେ ବାହାରିବାଟା ଏକାନ୍ତ ଜରୁରୀ ?

ସେ କଥା କିପରି କହିହେବ - ଏହା ଠାରୁ ତ ଅଧିକ ଖରାପ ଅବସ୍ଥାରୁ ବାପା ସୁସ୍ଥ ହୋଇଛନ୍ତି। ଏଥର ତାଂକର ଶାରିରୀକ ଅବସ୍ଥା ଯଦିଓ ସେପରି ହେଲେ ମାନସିକ ସ୍ତରରେ ଲାଗୁଛନ୍ତି ବେଶି ଦୁର୍ବଳ। ଆଉ ଆଗଭଳି ବାକ୍ ସ୍ଫୁତି ନାହିଁ, ସ୍ୱରଟି ଆସୁଛି ଗୋଟେ ଗମ୍ଭିରୀ ଘରରୁ ଆସୁଥିବା ସ୍ୱର ପରି। ତେବେ ଆଜି ରାତିରେ ନ ବାହାରି କାଲିକୁ ଆ - ଭାଇ କହିଲେ।

ଅଥଚ ସକାଳର ପ୍ରଥମ ଟେଲିଫୋନ୍ ଆସିଲା ବାପା ଚାଲିଗଲେ। ଖବର ପାଇସାରି ମୁଁ ଧିକ୍କାରୀଲି ନିଜକୁ - କାହିଁକି ରାତା ରାତି ଘରକୁ ଯିବାର ଦୁଃସାହସ କରି ପାରିଲନି ବୋଲି। ଯାଇଥାଆନ୍ତି ଯଦି ଅନ୍ତତଃ ଶେଷ ମୁହୂର୍ତ୍ତରେ ତ ଦେଖିବାର ସୁଯୋଗ ପାଇଥାଆନ୍ତି। ହଉ ଯାହା ତ ଭାଗ୍ୟରେ ଥିଲା ହେଲା - ମୁଁ ସର୍ବନିମ୍ନ ସମୟ ଭିତରେ ପହଂଚୁଛି, ସଂସ୍କାର ପାଇଁ ମୋତେ ଅପେକ୍ଷା କର କହି ମୁଁ ବାହାରି ପଡିଲି।

ମୁଁ ଦୀର୍ଘପଥ ଅତିକ୍ରମ କରି ପହଂଚିବା ବେଳକୁ ମୋତେ ଅପେକ୍ଷା କରି କରି ପ୍ରାୟ ଧୈର୍ଯ୍ୟଚ୍ୟୁତି ଘଟିସାରିଥିଲା ସମସ୍ତଙ୍କର। ସାହିରେ ଲାଗୁନଥିଲା ଚୂଲି, ଶବବି ହେଉଥିଲା ବାସୀ ମଢ଼ା, ତଥାପି ହେଇ ପହଂଚିଯିବ, ଏତେ ସମୟ ଅପେକ୍ଷା କଲେଣି, ଏତେ ଦୂରରୁ ଶେଷ ଦର୍ଶନ ପାଇଁ ଆସୁଛି, ଆଉ ଘଡିଏ ଅପେକ୍ଷା କରିଯିବା ନ୍ୟାୟରେ ସମସ୍ତେ ବସିଥିଲେ ମୋ ବାଟ ଚାହିଁ। ମୁଁ ପହଂଚିବା କ୍ଷଣି ଆଉ ବିଳମ୍ବ ନକରି ସଜିଲ୍ କରାଗଲା କୋକେଇ, ଆରମ୍ଭ କରାଗଲା ରୀତି ନୀତି, ଲଦାଗଲା ଜୁଇ, ପ୍ରସ୍ତୁତ ହେଲା ଚରୁଅନ୍ନ। ଚରୁଅନ୍ନ ପ୍ରଦାନ ପୂର୍ବରୁ ବାପାଂକର ପୁରୁଣା ବସ୍ତ୍ର ଖୋଲି ଯେତେବେଳେ ନୂଆ ବସ୍ତ୍ର ପରିଧାନ କରାଗଲା। ସେତେବେଳେ ମୁଁ ଦେଖିଲି ତାଂକର ବିହାରୀ ପାର୍ଟନ୍ ପଂଜାବୀ ପକେଟ୍‌ରେ ଅଛି ଛୋଟ କାଗଜ

ଶେଷ ସମୟ ଆସିଗଲାଣି। ତେଣୁ ସବୁ ତଥ୍ୟ ହାସଲ କରିନେବୁ। ମୋର ଶତାୟୁ ହେବାର ଅଛି। ମୁଁ ଜାଣିପାରିବି ଠିକଣା ବେଳ। ସେତେବେଳେ ମୁଁ ଖୋଲିବି ମୋ ସଂଚୟର ଗୁମର, ଏବେ ନୁହଁ। ହେଲେ ଏହା ସତ୍ୟ ଯେ ସେଥିରୁ କିଛି ବରବାଦ୍ ହୋଇଗଲା, ଅପାତ୍ରରେ ପଡିଗଲା। ମୁଁ କ'ଣ ଜାଣିଥିଲି ମଣିଷର ସ୍ୱରୂପ ଏପରି ବଦଳି ଯିବ ବୋଲି, ତାହା ପୁଣି ନିଜର ପିତା ପ୍ରତି। ଈଶ୍ୱର ତାକୁ ସଦ୍‌ବୁଦ୍ଧି ଦେବେ, ସେ ଭୁଲ୍ ବୁଝିବ ନିଶ୍ଚୟ।

ତମର ଭୟ ହେଉଛି କି ବାପା, ମୁଁ ଏବେଠାରୁ ଜାଣିଗଲେ ତମର ସଂଚିତ ଧନର ପରିମାଣ, ଲୋଭ କରି କିଛି ମାଗିବି ବୋଲି ?

ନା, ସେ ଭୟ ମୋର ନାହିଁ ଏବଂ ସେ ଧନର ଆବଶ୍ୟକତା ମଧ୍ୟ ତୋର ନାହିଁ। ଠିକଣା ସମୟରେ ତୁ ଜାଣିବୁ। ସେ କଥା ଜାଣିବା ପାଇଁ ତୁ ଆଗ୍ରହ ପ୍ରକାଶ କଲୁ ଭଲ କଥା ମାତ୍ର ତା' ପାଇଁ ଉତ୍‌କଣ୍ଠିତ ହେବୁ ନାହିଁ।

ମୋତେ ବି ତମେ ସେହି ଅପାତ୍ର ପର୍ଯ୍ୟାୟରେ ରଖୁଛ ତେବେ ?

ଏଠି ପାତ୍ର - ଅପାତ୍ରର କଥା ଉଠୁନି। କଥା ରହିଛି ଆବଶ୍ୟକତାର। ମେଘ ବର୍ଷିବା ବେଳେ ସବୁଠି ବର୍ଷେ, ସମୁଦ୍ରରେ,ପାହାଡ଼ରେ,କ୍ଷେତରେ, ନଦୀ, ନାଳ, ନର୍ଦ୍ଦମାରେ। ସମୁଦ୍ରର ବକ୍ଷ ବର୍ଷା ପାଣିରେ ସ୍ଫୀତ ହୁଏନି କି ନର୍ଦ୍ଦମା ପାଇଁ ବର୍ଷାର କୌଣସି ଆବଶ୍ୟକତା ନଥାଏ। ହେଲେ ମେଘ କ'ଣ ବର୍ଷିବାର ଧର୍ମ ଭୁଲି ସେମାନଙ୍କୁ ବାଦ ଦେଇଦିଏ ? ତେଣୁ ଏଠାରେ ପାତ୍ର-ଅପାତ୍ରର କଥା ନାହିଁ। କଥା ରହିଛି ସମୟର। ସେ ସମୟ ଆସିଲେ ତୁ ବଳେ ଜାଣିବୁ ଏବଂ ଆଶା କରୁଛି ତୋ' ପ୍ରାପ୍ୟ ବି ତୁ ପାଇବୁ।

ହେଲେ ତମେ ଯାହା ରଖୁଛ ତାହା ତ ସ୍ଥାବର ନୁହେଁ, ଅବସ୍ଥାବର ସମ୍ପତ୍ତିରେ ମୂଷା ଲାଗିବାର ଭୟ ଅଧିକ।

ନା - ମୋ ଅସ୍ଥାବର ସମ୍ପତ୍ତିରେ ମୂଷା ଲାଗି ପାରିବେ ନାହିଁ। ତମ ମାନଂକୁ ଯାହା ଦୃଶ୍ୟ ତାହା ମୋର ସ୍ଥାବର ସମ୍ପତ୍ତି, ଯାହା ଅଦୃଶ୍ୟ ମୋର ଅସ୍ଥାବର। ସେହି ଅଦୃଶ ହିଁ ରହସ୍ୟ, ତାହା ମୁଁ ବଂଚି ଥାଉଁ ଥାଉଁ ଖୋଲିବି କିପରି ? ରହସ୍ୟର ଉନ୍‌ମୋଚନ ହିଁ ସତ୍ୟ ଏବଂ ସତ୍ୟ ହିଁ ଚିରଦିନ ରହସ୍ୟମୟ। ତୋ'ର ସେ ସତ୍ୟ ସହ ସାମ୍ନା ହେବ କିନ୍ତୁ ଏବେ ନୁହଁ। ସେ ସମୟ ଆସିଲେ ମୁଁ ତୋତେ ବଳେ ଡାକି କହିଦେବି, ସେଥିପାଇଁ ତୋ'ର ଉଦ୍‌ବିଗ୍ନ ହେବାର କିଛି ନାହିଁ।

ବାପା ଫେରିନଥିଲେ ସ୍ୱାଭାବିକତାକୁ କିଂତୁ ସରିଗଲା ମୋର ଛୁଟିର ମିଆଦ। ମୁଁ ଫେରିଆସିଲି ମୋ କର୍ମକ୍ଷେତ୍ରକୁ। ଅବଶ୍ୟ ବାପାଂକ ଅସୁସ୍ଥତା ଅଧିକ ଦିନ ରହିଲା ନାହିଁ। ସେ ସୁସ୍ଥ ହୋଇଗଲେ ଏବଂ ଆମ ସମସ୍ତଂକ ପୂର୍ବାନୁମାନକୁ ଭୁଲ ପ୍ରମାଣିତ କରି ସେ ସ୍ୱାଭାବିକ ଜୀବନଚର୍ଯ୍ୟାକୁ ଫେରିଲେ।

ଏଇତ ମାତ୍ର ଦୁଇଦିନ ତଳର କଥା, ବଡ଼ ଭଉଣୀ ଟେଲିଫୋନ୍ କରିଥିଲା ବାପା ଭଲ ଅଛନ୍ତି, ଆସିବା ବେଳେ କହିଥିଲେ ତାକୁ ମୋତେ ଖବର ଦେଇ ଦେବାକୁ ଯେ ମୋ ସହ ତାଂକର କିଛି କଥା ଅଛି। ମୁଁ ବିତୃଷ୍ଣା ମିଶ୍ରିତ କ୍ରୋଧରେ ଏଡାଇ ଯାଇଥିଲି ସେ ଖବରକୁ ଯେ ମୋ ସହ କି କଥା ଅଛି ତାଂକର? ସେ ତ ସମୟ ଦେଇଛନ୍ତି ଓ ମୁଁ ସେ ସମୟକୁ ଅପେକ୍ଷା କରିଛି। ରଖିଥାଆନ୍ତୁ ସେ ତାଂକର ଗୋପନ ରହସ୍ୟ ତାଂକ ପାଖରେ। ମୁଁ ଜାଣେ ସେ ରହସ୍ୟ ଖୋଲିବା ବେଳକୁ ଆଉ କିଛି ନଥିବ ବରଂ ଭଲ ସେ ସାଇତି ରଖିଥିବା ରହସ୍ୟ ଚିରଦିନ ରହସ୍ୟମୟ ହୋଇଥାଉ।

ଗତକାଲି ରାତିରେ ମାତ୍ର ଖବର ପାଇଲି ଯେ ତାଂକ ଦେହ ଭଲ ନାହିଁ। ଖବର ପାଇବା ବେଳକୁ କୌଣସି ଗାଡିର ସମୟ ନଥିଲା, ଏତେ ରାତିରେ ଡ୍ରାଇଭର ଠିକ୍ କରି କାର ଧରି ଯିବାଟା ମଧ୍ୟ ନିରାପଦ ନଥିଲା। ଖବରପାଇବା ପରେ ଦ୍ୱନ୍ଦରେ ପଡି ପଚାରିଲି - କ'ଣ ଏ ରାତିରେ ବାହାରିବାଟା ଏକାନ୍ତ ଜରୁରୀ?

ସେ କଥା କିପରି କହିହେବ - ଏହା ଠାରୁ ତ ଅଧିକ ଖରାପ ଅବସ୍ଥାରୁ ବାପା ସୁସ୍ଥ ହୋଇଛନ୍ତି। ଏଥର ତାଂକର ଶାରିରୀକ ଅବସ୍ଥା ଯଦିଓ ସେପରି ହେଲେ ମାନସିକ ସ୍ତରରେ ଲାଗୁଛନ୍ତି ବେଶି ଦୁର୍ବଳ। ଆଉ ଆଗଭଳି ବାକ୍ ସ୍ଫୁତି ନାହିଁ, ସ୍ୱରଟି ଆସୁଛି ଗୋଟେ ଗମ୍ଭିରୀ ଘରରୁ ଆସୁଥିବା ସ୍ୱର ପରି। ତେବେ ଆଜି ରାତିରେ ନ ବାହାରି କାଲିକୁ ଆ - ଭାଇ କହିଲେ।

ଅଥଚ ସକାଳର ପ୍ରଥମ ଟେଲିଫୋନ୍ ଆସିଲା ବାପା ଚାଲିଗଲେ। ଖବର ପାଇସାରି ମୁଁ ଧିକ୍କାରୀଲି ନିଜକୁ - କାହିଁକି ରାତା ରାତି ଘରକୁ ଯିବାର ଦୁଃସାହସ କରି ପାରିଲନି ବୋଲି। ଯାଇଥାଆନ୍ତି ଯଦି ଅନ୍ତତଃ ଶେଷ ମୁହୂର୍ତ୍ତରେ ତ ଦେଖିବାର ସୁଯୋଗ ପାଇଥାଆନ୍ତି। ହଉ ଯାହା ତ ଭାଗ୍ୟରେ ଥିଲା ହେଲା - ମୁଁ ସର୍ବନିମ୍ନ ସମୟ ଭିତରେ ପହଂଚୁଛି, ସଂସ୍କାର ପାଇଁ ମୋତେ ଅପେକ୍ଷା କର କହି ମୁଁ ବାହାରି ପଡିଲି।

ମୁଁ ଦୀର୍ଘପଥ ଅତିକ୍ରମ କରି ପହଂଚିବା ବେଳକୁ ମୋତେ ଅପେକ୍ଷା କରି କରି ପ୍ରାୟ ଧୈର୍ଯ୍ୟଚ୍ୟୁତି ଘଟିସାରିଥିଲା ସମସ୍ତଙ୍କର। ସାହିରେ ଲାଗୁନଥିଲା ଚୂଲି, ଶବବି ହେଉଥିଲା ବାସୀ ମଡ଼ା, ତଥାପି ହେଇ ପହଂଚିଯିବ, ଏତେ ସମୟ ଅପେକ୍ଷା କଲେଣି, ଏତେ ଦୂରରୁ ଶେଷ ଦର୍ଶନ ପାଇଁ ଆସୁଛି, ଆଉ ଘଡିଏ ଅପେକ୍ଷା କରିଯିବା ନ୍ୟାୟରେ ସମସ୍ତେ ବସିଥିଲେ ମୋ ବାଟ ଚାହିଁ। ମୁଁ ପହଂଚିବା କ୍ଷଣି ଆଉ ବିଳମ୍ବ ନକରି ସଜିଲ୍ କରାଗଲା କୋକେଇ, ଆରମ୍ଭ କରାଗଲା ରୀତି ନୀତି, ଲଦାଗଲା ଜୁଇ, ପ୍ରସ୍ତୁତ ହେଲା ଚରୁଅନ୍ନ। ଚରୁଅନ୍ନ ପ୍ରଦାନ ପୂର୍ବରୁ ବାପାଂକର ପୁରୁଣା ବସ୍ତ୍ର ଖୋଲି ଯେତେବେଳେ ନୂଆ ବସ୍ତ୍ର ପରିଧାନ କରାଗଲା। ସେତେବେଳେ ମୁଁ ଦେଖିଲି ତାଂକର ବିହାରୀ ପାର୍ଟନ୍ ପଂଜାବୀ ପକେଟ୍‌ରେ ଅଛି ଛୋଟ କାଗଜ

ଖଣ୍ଡେ। ମୁଁ କାଗଜଟିକୁ ବାହାର କଲି। ରାତ୍ରୀର ଅନ୍ଧାର ଏବଂ ଗୋଟିଏ ମାତ୍ର ଗ୍ୟାସ୍ ଲାଇଟର ଆଲୁଅରେ ସେ ଛଟା ମଟା ଅକ୍ଷରକୁ ଏ ବ୍ୟସ୍ତତା ଭିତରେ ପଢ଼ିପାରିବା ସମ୍ଭବ ହୋଇ ପାରିବ ନାହିଁ ଭାବି ତାକୁ ମୁଁ ମୋ ପକେଟରେ ପୂରାଇ ଦେଲି। ସଂସ୍କାର କାର୍ଯ୍ୟ ସରିବା ବେଳକୁ ରାତି ତଥାପି ପାହିନଥାଏ। ନଦୀକୁ ସ୍ନାନ ଶୌଚ ପାଇଁ ଗଲାବେଳକୁ କାଳେ କାଗଜଟି ଭିଜି ଯିବ ଭାବି ତାକୁ ମୋ ମନିପର୍ସ ଭିତରେ ରଖି ଦେଇଥିଲି।

ମୃତ୍ୟୁ, ମୃତ୍ୟୁ ପରବର୍ତ୍ତୀ ସମସ୍ତ ରୀତି,ନୀତି, କ୍ରିୟା, କର୍ମ ଏବଂ ପରେ ପରେ ବ୍ରାହ୍ମଣ ଭୋଜନ, ଜ୍ଞାତି ଭୋଜନ ଏବଂ ଗାଆଁ ଭୋଜନ ଦେବାର ବ୍ୟସ୍ତତା ମଧ୍ୟରେ ମୁଁ ଆଉ କେବେ ମନରେ ପକାଇ ପାରିନଥିଲି ମୋ ମନିପର୍ସରେ ସାଇତା ସେଇ ଛୋଟ କାଗଜ ଖଣ୍ଡକର କଥା। ଏତେ ସଯତ୍ନରେ ସାଇତା ଏବଂ ବାପାଙ୍କର ହାତଲେଖା, ସମ୍ଭବତ ଶେଷ ହାତଲେଖା କାଗଜଟିକୁ ମୁଁ ଯେ କିପରି ଦୀର୍ଘ ଚଉଦଦିନ କାଳ ନଦେଖିଲି ତାହା ଏବେ ବି ମୋତେ ରହସ୍ୟମୟ ଲାଗେ। ଭାବେ ଏହା ବୋଧେ ବିଧି ନିର୍ଦ୍ଧିଷ୍ଟଥିଲା କିମ୍ବା ପିତୃଉଦ୍ଦେଶ୍ୟ ଥିଲା, ଯେଉଁଥି ପାଇଁ ଏ ଚଉଦ ଦିନ କାଳ ମୁଁ ବିସ୍ମୃତ ହୋଇଥିଲି ସେ କାଗଜ ଖଣ୍ଡକର ଅସ୍ତିତ୍ୱରୁ।

ଚଉଦ ଦିନ ପରେ ମୁଁ ଫେରିଲି ରହୁଥିବା ସହରକୁ। କାର୍‌ରୁ ଓହ୍ଲାଇବା ବେଳେ ପତ୍ନୀ କେବଳ ହାତରେ ଧରିଥିଲେ ବାପାଙ୍କର ସୁଦୃଶ୍ୟ ବନ୍ଧାଇ ଫଟୋଟି ଏବଂ ଫଟୋରେ ପିନ୍ଧାଇବାକୁ ଆଣିଥିବା କିଛି କର୍ପୂର ମାଳକୁ। ଆମେ ସମସ୍ତେ କାର୍‌ରୁ ଅନ୍ୟ ସମସ୍ତ ଜିନିଷ ବାହାର କରି ଘରକୁ ଆସିବା ବେଳକୁ ସେ ଫଟୋଟିକୁ ଆମ ଶୋଇବା ଘରର ସେଲଫ ଉପରେ ରଖି ସାରିଥିଲେ ଓ ତା' ଉପରେ ଲମ୍ବାଇ ସାରିଥିଲେ କର୍ପୂର ମାଳକୁ। ମୁଁ ଘରକୁ ପସୁ ପସୁ କହିଲି - ଫଟୋଟି ଏଠାରେ କାହିଁକି ରଖିଲ ? ଠାକୁର ଘରେ ରଖିଲେ ଠିକ୍ ହେବ, ଅନ୍ତତଃ ପୂଜା କଲାବେଳେ ତାଙ୍କୁ ଧୂପ, ଦୀପ ଦେଇ ପାରିବା।

ନା - ବାପାଙ୍କ ଫଟୋକୁ ଏଇଠି ରଖିବା,ତାଙ୍କୁ ଲୌକିକ ପୂଜା ଅପେକ୍ଷା ଆମର ସ୍ମରଣ ବେଶି ଦରକାର। ସକାଳୁ ଉଠିବା ପରେ ଓ ରାତିରେ ଶୋଇବାକୁ ଗଲାବେଳେ ଅନ୍ତତଃ ବାପାଙ୍କ ଫଟୋ ଦେଖି ଆମେ ତାଙ୍କୁ ସ୍ମରଣ କରି ପାରିବା। ବର୍ଷରେ ଥରେ ଶ୍ରାଦ୍ଧ ଦେଇ ତାଙ୍କୁ ସ୍ମରଣ କରିବା ଅପେକ୍ଷା ନିତିନିତି ତାଙ୍କୁ ସ୍ମରଣ କରିବା ଭଲ ହେବ।

ସ୍ମରଣ ଶବ୍ଦଟି ଶୁଣୁ ଶୁଣୁ ହଠାତ୍ ମୋର ମନେ ପଡ଼ିଗଲା ବାପାଙ୍କ ପକେଟ୍‌ରୁ ବାହାର କରିଥିବା କାଗଜ ଖଣ୍ଡକ କଥା। ସଂଗେ ସଂଗେ ବାହାର କଲି କାଗଜଟିକୁ। ମୃତ୍ୟୁର ପୂର୍ବ ରାତିରେ ବୋଧେ ବାପା ଲେଖିଥିଲେ ସେ କାଗଜ ଖଣ୍ଡକ, କାରଣ ଅକ୍ଷରଗୁଡାକ ଲାଗୁଥିଲେ ଯନ୍ତ୍ରଣାସିକ୍ତ ପରି। ଲେଖାଥିଲା - "ଗତ ଥର ତୁ ମୋତେ ପଚାରିଥିବା ପ୍ରଶ୍ନଟି ଯକ୍ଷ ପ୍ରଶ୍ନ ପରି ମୋତେ ଅନୁଧାବନ କରିବ ମୃତ୍ୟୁ ଲୋକ ଯାଏ। ତୁ' ପଚାରିଲୁ, ସେ ଅଧିକାର ତୋ'ର ବି

ଥିଲା। ହେଲେ ତୁ ପଚାରିବା ବେଳକୁ ମୁଁ ହରାଇ ସାରିଥିଲି ଉତ୍ତର ଦେବାରେ ଅଧିକାର ଏବଂ ସୌଭାଗ୍ୟ। ବାପାଂକର ଗୁପ୍ତଧନ ନେଇ ତୋ' ଭିତରେ ଥିବ ଧାରଣାଟି ହଠାତ୍ ନିଃସ୍ୱ ହୋଇଯାଉ ମୁଁ ଚାହୁଁନଥିଲି। ନ ଚାହିଁବାରେ ବି ମୋ ସ୍ୱାର୍ଥ ଥିଲା ଶତାୟୁ ହେବାର ଅଭିପ୍ସା! ଯେତେବେଳେ ମୁଁ ଉପଲବ୍ଧି କରୁଛି ଜୀବନ ଆଉ ମୋ ଆୟତ୍ତାଧୀନ ନୁହେଁ, ଖୁବ୍ ଶୀଘ୍ର ଶୀଘ୍ର ମୃତ୍ୟୁ ଆଡ଼କୁ ଧାବମାନ ସେତେବେଳେ ଏକଥା ଲେଖୁଛି। ସେଦିନ ତୋତେ କହିଥିଲି ସତ୍ୟ ଚିରଦିନ ରହସ୍ୟମୟ ଏବଂ ରହସ୍ୟ ଉନ୍‌ମୋଚନ ତୋତେ ହୁଏତ ଦୁଃଖୀ କରିପାରେ। କିଂତୁ ମୋ ମୃତ୍ୟୁ ସମୟର ପ୍ରାର୍ଥନା ଯେ ତୁ ସୁଖୀ ହଅ। ସେଥିପାଇଁ ରହସ୍ୟକୁ ରହସ୍ୟମୟ କରି ରଖିଲି। ପାରିବୁ ଯଦି ଏ ରହସ୍ୟକୁ ଆଉ କେବେ ସ୍ମରଣ କରିବୁ ନାହିଁ। ସୁଖୀ ହେବୁ।"

ମୋ ଆଖିରୁ ଗଡୁଥିଲା ଲୁହ। ପତ୍ନୀ ମୋ ହାତରୁ କାଗଜଟି ନେଇ ପଢ଼ି ସାରି ମୋର ଗଡ଼ି ଆସୁଥିବା ଲୁହକୁ ପୋଛିଦେଇ କହିଲେ - ମୃତ୍ୟୁକାଳୀନ ପ୍ରାର୍ଥନା ନିଷ୍ଫଳ ହୁଏ ନାହିଁ। ବାପା ଏହାଠାରୁ ଆମକୁ ଆଉ ଅଧିକ କ'ଣ ଦେଇଥିଲେ ତମେ ଖୁସି ହୋଇଥାଆନ୍ତ ?"

* * *

# ।। ପୁନର୍ନବ ।।

ସେ ଫେରୁଥିଲେ। ମନେ ପକାଉଥିଲେ ଅତୀତର ଦୁଃଖଦ ସ୍ମୃତି ଓ ତିକ୍ତ ଅନୁଭୂତିକୁ। ସ୍ମୃତି ସବୁ ଏତେ ରୋମାଂଚିତ କରି ଏମିତି ମୁଗ୍ଧ ଅନୁଭବ ଦେଇପାରନ୍ତି, ଏଠିକୁ ଫେରିବାର ସୁଯୋଗଟିଏ ମିଳିନଥିଲେ ହୁଏତ ଏକଥାର ସାମାନ୍ୟତମ ଅବବୋଧ ତାଂକର ଆସିନଥାନ୍ତା। ନିଜର ଜନ୍ମ ମାଟି ଭାବି ଯେଉଁ ସ୍ଥାନର ଐତିହ୍ୟ, ସଂସ୍କୃତି ଓ ସଭ୍ୟତା ପାଇଁ ସେ ଗର୍ବ ଓ ଗୌରବ ଅନୁଭବ କରୁଥିଲେ, ଘଟଣାଚକ୍ରରେ ସେ ମାଟିରୁ ମୋହ ତୁଟାଇ ସେ ପାଲଟି ଯାଇଥିଲେ ସେ ମାଟି ପାଇଁ ପରଦେଶୀ। ଏବେ ମଧ ଘର ଛାଡ଼ି, ଏ ସ୍ଥାନ ଛାଡ଼ି ଚାଲିଯିବାର ବିରଳ ଦୃଶ୍ୟଟି ତାଂକ ଛାତି ତଳେ ସାଇତା ହୋଇ ରହିଛି ବକଳ ବାନ୍ଧି ଯାଇଥିବା ଏକ ପୁରୁଣା କ୍ଷତ ପରି। ମାଟି ଉପରେ ମଜବୁତ୍ ଭାବେ ପାଦ ନ ପଡିଲା ଯାଏଁ, ବାରମ୍ବାର ଉଖୁରାଇ ହୋଇ ଯାଉଥିଲା ସେ ବକଳ। କ୍ଷତାକ୍ତ ଓ ରକ୍ତାକ୍ତ କରୁଥିଲା ଦେହ, ମନ ଓ ପ୍ରାଣକୁ। ସମୟକ୍ରମେ ସବୁ ଶୋକ ଭୁଲି ହୋଇଗଲା ପରି, ଭୁଲି ହୋଇଯାଇଛି ସେ ଶୋକ, ବିସ୍ମୃତ ହୋଇଛି ସେ ଦୁଃଖ। ଏବେ ଛାତି ତଳେ ଯାହା ସାଇତା ହୋଇ ରହିଛି, ତାହା ସେ ଦୁଃଖଦ ସ୍ମୃତିର ଆୟୂଷ ନୁହେଁ ଅସ୍ଥି ଖଣ୍ଡେ କେବଳ, ଯାହାକୁ ଯେ କୌଣସି ମୁହୂର୍ତ୍ତରେ ବିସର୍ଜନ କରି ଶେଷ ପିଣ୍ଡଦାନ କରାଯାଇପାରେ।

ବିସର୍ଜନ କରି ପିଣ୍ଡଦାନ କରାଯାଇପାରେ! ନିଜ ଭିତରେ ଏ ଭାବନା ତାଂକୁ ଆଶ୍ଚର୍ଯ୍ୟ କରିଲା। ନିଜ ମନକୁ ପ୍ରଶ୍ନ କଲେ - ବାଲ୍ୟ, ଶୈଶବ, କୈଶୋର ଏବଂ ଯୌବନର କିଛି ସମୟକୁ ରଂଗମାଖି ସ୍ୱପ୍ନିଳ କରିଥିବା ଏ ମାଟିର ସ୍ମୃତି ଏବେ ଅତୀତର ଅସ୍ଥି କିପରି ହୋଇପାରିବ? ଏହା ତ ଜଳନ୍ତା ଜୁଇରୁ ସାଇତା ଅବଶେଷାଂଶ ନୁହେଁ। ଏହା ବର୍ତ୍ତମାନ ଜୀବନର ଆଦିଭୂମି। ଯେଉଁ ଆଦିଭୂମିରୁ ଆରମ୍ଭ ହୋଇଥିବା ଆଦ୍ୟଯାତ୍ରା ତାଂକୁ ଆଣି ପହଞ୍ଚାଇଛି ଏଠାରେ, ତାର ସ୍ମୃତି କେବଳ ଅସ୍ଥି ଖଣ୍ଡେ କିପରି ହୋଇ ପାରିବ? ନା - ବିଧିନିର୍ଦ୍ଧିଷ୍ଟ ଏହି ପ୍ରଲମ୍ବିତ ଯାତ୍ରାର ମୂଳ ଉତ୍ସକୁ ଫେରିବାର ମୁହୂର୍ତ୍ତ ତାଂକ ପାଇଁ ବିସର୍ଜନର ମୁହୂର୍ତ୍ତ ନୁହେଁ ବରଂ ପୁନଃସର୍ଜନର ମୁହୂର୍ତ୍ତ।

ମନେ ପକାଉଥିଲେ ମନୋଜ ବାବୁ କେତେ ବର୍ଷ ପରେ ଫେରୁଛନ୍ତି ନିଜର ପ୍ରିୟ ମାଟିକୁ। ପାଖାପାଖି ତିରିଶ ବର୍ଷ। ମସିହା ମନେଥିଲେ ମଧ୍ୟ ତାରିଖ ମନେ ନାହିଁ। ନିଜର ପାଠପଢ଼ାର ଶ୍ରେଣୀକୁ ନେଇ ସିନା ମସିହାଟି ମନେ ପକାଇ ହେଉଛି, ହେଲେ ଏ ମାଟିକୁ ଛାଡ଼ିବାର ଦିନଟା ସେମିତି ଏକ ଗୌରବମୟ ଦିନ ନଥିଲା ଯେ ଯାହାର ତାରିଖଟିକୁ ସେ ମନେ ରଖି ପାରିଥାଆନ୍ତେ ତା'ର ଜୟନ୍ତି ପାଳନ ପାଇଁ।

ଏ ମାଟିରୁ କାୟିକ ସଂପର୍କ ତୁଟି ଯାଇଥିଲେ ମଧ୍ୟ ତୁଟି ପାରୁନଥିଲା ଆତ୍ମିକ ସଂପର୍କ। ଏଡ଼େ ବଡ଼ ରାଜ୍ୟର ବିଶାଳ ଭୂଖଣ୍ଡରେ ଘର ବୋଲି ନଥିଲା ସ୍ଥାନଟିଏ, ତଥାପି କିଏ ଯଦି କେବେ ପଚାରି ଦେଉଥିଲା ଘର କେଉଁଠି ବୋଲି ତେବେ ଆପେ ଆପେ ପାଟିକୁ ଚାଲି ଆସୁଥିଲା ସେ ମାଟିର ନାଆଁ। ଅବଶ୍ୟ ପରକ୍ଷଣରେ କଥା ଚଳାଇବା ଭଳି କୁହନ୍ତି, ଏବେ ଆଉ ନିଜ ଘର କ'ଣ ? ବୃତ୍ତି ଦାୟରେ ଯେଉଁଠି ରହିଲୁ ତାହା ଘର ଏବଂ ବାପା, ମାଆ ଯେଉଁଠି ରହିଲେ ତାହା ଆମ ଗାଆଁ ବା ସହର।

ଗୋଟିଏ ମିଥ୍ୟା ଉକ୍ତି ଦ୍ୱାରା ଯୁକ୍ତି ଦର୍ଶାଇ ଅନ୍ୟକୁ ବୁଝାଇ ଦେବା ହେଉ ଅବା ଭଣ୍ଡାଇ ଦେବାଟା ଯେତେ ସହଜ ହୁଏ ନିଜକୁ ଠକିବାଟା ସେତେ ସହଜ ହୁଏନି। ତେଣୁ ଚେତନ ଓ ଅବଚେତନ ଉଭୟ ସ୍ତରରେ ଖୁବ୍ ଶ୍ରଦ୍ଧାରେ ସାଇତା ସେ ସ୍ଥାନଟିକୁ ସେ ବାରମ୍ବାର ସ୍ମରଣ କରନ୍ତି।

ଯେଉଁଦିନ ରାଜାରାଜୁଡା ସମୟର ଏ ଛୋଟିଆ ଉପଖଣ୍ଡଟି ଗୋଟିଏ ଜିଲ୍ଲାର ସଦରମହକୁମା ହେଲା, ସେଦିନ କାହିଁକି କେଜାଣି ନିଜ ଭିତରର ଖୁସିକୁ ସେ ସମ୍ଭାଳି ପାରିଲେ ନାହିଁ। ଅଫିସରୁ ଘରକୁ ଯିବାବେଳେ ହାତରେ ଧରିଥିଲେ ମିଠା ପ୍ୟାକେଟ ଟିଏ,ଖୁସି ଖବରଟି ବାଣ୍ଟି ଘରେ ସମସ୍ତଙ୍କୁ ମିଠା ଖୁଆଇ ସାରି ପହଂଚିଲେ ବାପାଂକ ରୁମରେ। ବାପା ପଚାରିଲେ - କ'ଣ ନୂଆ ବର୍ଷ ପାଇଁ ?

ନା - ଗୋଟେ ଖୁସି ଖବରର।

କ'ଣ ତୋ'ର ପ୍ରମୋଶନ ହେଲାକି ?

ନା - ଆଜି ନୂଆବର୍ଷରେ ଆମ ସହରଟି ଏକ ଜିଲ୍ଲାରେ ପରିଣତ ହେଲା।

ବାପା ବୋଧହୁଏ ଖବର କାଗଜରୁ ଏ ଖବରଟିକୁ ଜାଣି ସାରିଥିଲେ। ସେ ଖବରକୁ ନେଇ ପୁଅର ଖୁସି ପ୍ରକଟ ତାଂକୁ ବିଷାଦ ଭିତରକୁ ଟାଣିନେଲା। କିଛି ସମୟ ଗୁମ୍ ରହିବା ପରେ ସେ କହିଲେ - ଯେଉଁ ସହରଟିକୁ ତୁ ଆମ ସହର ବୋଲି କହୁଛୁ ଏବଂ ସେଇଟି ଏକ ଜିଲ୍ଲା ହେଲା ବୋଲି ଖୁସି ହେଉଛୁ, ସେ ତ କେବେଠୁଁ ଆଉ ଆମ ସହର ହୋଇ ନାହିଁ।

ସେ ସହରଟି ଆଉ ଆମର ହୋଇ ନାହିଁ ସତ, ହେଲେ ଆମେ କ'ଣ ଆମ ସ୍ମୃତି ପଟରୁ ଦୂରେଇ ଦେଇ ପାରିଛନ୍ତି କି ସେ ସହରକୁ? କେତେ ବର୍ଗଫୁଟର ଜାଗା ଖଣ୍ଡେ କେବଳ କ'ଣ ଯୋଡି ରଖେ ମଣିଷକୁ ଗୋଟିଏ ଜାଗାକୁ ନିଜର ସହର ବୋଲି ଚିହ୍ନାଇବାକୁ? ଏବେ ତ ଆମର କୌଣସି ସ୍ଥାନରେ ଘର ନାହିଁ। ତେବେ ଆମେ କ'ଣ ଏ ରାଜ୍ୟର କିମ୍ବା ଏ ଦେଶର ଅଧିବାସୀ ନୁହଁନ୍ତି ?

ବାପା ଆଉ କିଛି କହି ନଥିଲେ ସତ, ହେଲେ ଉତ୍ତରଟି ଯେ ତାଂକୁ ସନ୍ତୁଷ୍ଟ କରି ପାରିଥିଲା ସେ କଥା ନୁହେଁ। କିଛି ସମୟ ନୀରବ ରହିବା ପରେ, ମିଠାରୁ ଗୋଟେ ନେଇ ପାଟିରେ ଦେଉଁ ଦେଉଁ କହିଲେ ମୋର କିମ୍ବା ତୋ' ବୋଉର ଅବା ଆଉ କେତେ ଦିନ ? ଆମେ ହୁଏତ ଦାୟିଛୁ କେଉଁ ଅଚିହ୍ନା ଶ୍ମଶାନ କିମ୍ବା ସ୍ୱର୍ଗଦ୍ୱାରରେ ପାଉଁଶ ମୁଠାଏ ହେବା ପାଇଁ। ମାନୁଛି ସ୍ୱର୍ଗଦ୍ୱାରରେ ପାଉଁଶ ମୁଠାଏ ହେବା ବହୁ ଜନ୍ମର ପୁଣ୍ୟର ଫଳ, ହେଲେ ନିଜ ଭିଟାମାଟିରେ ସମାଧି ଥାପିବା ବହୁଜନ୍ମର କର୍ମର ଫଳ। ହୁଏତ ଆମେ ସେ କର୍ମ କରିନାହୁଁ, ହେଲେ ମୋ ଜ୍ଞାତସାରରେ ତ ମୁଁ ଏମିତି କୌଣସି କର୍ମ ଏ ଜନ୍ମରେ କରି ନାହିଁ ଯେ ମୋ ଭାଗ୍ୟରେ ଭିଟାମାଟିରେ ମରିବାର ସୁଯୋଗ ଜୁଟିଲା ନାହିଁ। ହଁ - ମଣିଷ ତ ଗୋଟିଏ ଜନ୍ମର କର୍ମଫଳ ଭୋଗେନା, ଏ ସବୁ ପ୍ରାରବଧିର ଭୋଗ ବୋଲି ଧରି ନେବାକୁ ହେବ। ଭିଟାମାଟି ଚାଲିଯାଇଛି ବୋଲି ମୋର ଦୁଃଖ ନାହିଁକି ଈଶ୍ୱରଂକପାଖରେ ଅଭିଯୋଗ ନାହିଁ। ଈଶ୍ୱର କ'ଣ ମୋତେ କମ୍ ଦେଇଛନ୍ତି କି ? ଚାରି ଚାରିଟା ପୁଅ ଦେଇଛନ୍ତି, କେବଳ ଦେଇ ନାହାନ୍ତି ତାଂକୁ ଯୋଗ୍ୟ ବି କରାଇଛନ୍ତି। ନଚେତ୍ ମୁଁ ବା କିଏ, ତମେମାନେ ଆଜି ଯେଉଁଠି ପହଂଚିଛ, ସେଠାକୁ ପଠାଇବାକୁ ସମର୍ଥ ହୋଇ ଥାଆନ୍ତି ? ସାମାନ୍ୟ କିରାଣୀଟିଏ ଏହାଠାରୁ କେଉଁ ଅଧିକ ସଫଳତାର ସ୍ୱପ୍ନ ଦେଖି ପାରିଥାଆନ୍ତା ? ସେଥିପାଇଁ ତ ମୋର ଈଶ୍ୱରଂକ ବିରୁଦ୍ଧରେ କୌଣସି ଅଭିଯୋଗ ନାହିଁ, କେବଳ ଅଭିମାନ ରହିଗଲା ଯେ, ଯେଉଁ ମିଥ୍ୟା ଆରୋପରେ ମୁଁ ବେଘର ହେଲି, ସେ ସତ୍ୟର ରହସ୍ୟ ସେ ଖୋଲୁ ନାହାନ୍ତି କାହିଁକି ? ଯଦି ସେ କଥା ହୁଅନ୍ତା, ତେବେ ଶ୍ରଦ୍ଧାରେ ନ ହେଲା ନାହିଁ କେହି ତ ଘୃଣାରେ ମୋତେ ସ୍ମରଣ କରନ୍ତେ ନାହିଁ।

ବାପା ! ତମେ ତ ଆମ ମାନଂକୁ ସେତେବେଳେ ବୁଝାଉଥିଲ ଯେ ସେ ଦୁର୍ଯୋଗକୁ ଏକ ଦୁଃସ୍ୱପ୍ନ ପରି ଭୁଲି ଯିବା ପାଇଁ, ଅଥଚ୍ ତମେ ତ ତାକୁ ଏଯାଏଁ ସାଇତି ରଖିଛ ?

ହଁ - ତମମାନଂକୁ ବୁଝାଇବା ପାଇଁ ଓ ସେ ସମୟର ପରିସ୍ଥିତିକୁ ଦୃଢ଼ ଭାବରେ ସାମ୍ନା କରିବା ପାଇଁ  ମୁଁ ଏକଥା କହିଥିଲି ସତ, ହେଲେ ମୁଁ ମୋ ନିଜକୁ ଆଜିଯାଏଁ ବୁଝାଇ ପାରିନି। ତାହା ଯେ ଏକ ଅପୂରଣୀୟ କ୍ଷତି ଥିଲା ବୋଲି ନୁହେଁ ବରଂ ଏକ ଅପୂରଣୀୟ କ୍ଷତ ବୋଲି। ଯାହା ମୁଁ ଅର୍ଜି ନଥିଲି, ତାକୁ ବିକି ଦାୟ ମୁକ୍ତ ହେବାର ଅଧିକାର ମୋର ନଥିଲା। ପୁରୁଷାନୁକ୍ରମେ

ପାଇଥିବା ଉତ୍ତରାଧିକାରକୁ ବିକ୍ରୀ କରି ଦାୟମୁକ୍ତ ହୋଇଥିବାରୁ ପରଲୋକରେ ପିତୃ ପୁରୁଷଙ୍କୁ ମୁହଁ ଦେଖାଇବି କିପରି ?

ଯାହା ଯାଇଛି ଏବଂ ଯାହାକୁ ଫେରି ପାଇବାର ସମ୍ଭାବନା ନାହିଁ, ତାକୁ ନେଇ ନିଜ ଭିତରେ ଅପ୍ରାପ୍ତିର ଅବସୋସକୁ ସାଇତି ରଖି ଲାଭ କ'ଣ ହେବ ବାପା ?

ତୁ କ'ଣ ଭାବୁଛୁ ଏ କଥାଟି ମୋ ନିଜକୁ ମୁଁ ବାରମ୍ବାର ପଚାରି ଚାଲି ନାହିଁ ବୋଲି ? ପଚାରୁଛି - ହେଲେ ସବାଶେଷରେ ଉତ୍ତରଟି ସବୁବେଳେ ଆସୁଛି, ଏମିତି କାହିଁକି ହେଲା ?

ଠିକ୍ ଅଛି ବାପା - ଆମେ ହରାଇ ଦେଇଥିବା ଭିଟାମାଟିଟା ଧନୁରୁ ଖସି ଯାଇଥିବା ତୀର ପରି ଅଫେରା, ହେଲେ ଯଦି ଆମେ ଚେଷ୍ଟା କରି ସେହି ସହରରେ ଅନ୍ୟତ୍ର ଘର କରି ପାରିଲେ, ତମେ ତ ଖୁସି ହୋଇପାରିବ ?

ସେ ସମ୍ଭାବନା ବି କାହିଁ ? ତୋର ଅନ୍ୟ ତିନି ଭାଇ ତ ରାଜ୍ୟ ବାହାରେ, ସେଥିରୁ ଜଣେ ତ ଦେଶ ବାହାରେ। ମାଡି ମାଡି ତୁ ଜଣେ ରାଜ୍ୟ ଭିତରେ ଅଛୁ। ତୋ' ପାଖରେ ସେ ସମୟ ବା ସୁଯୋଗ କାହିଁ ଯେ ଆମେ ଫେରିଯାଇ ପାରିବା ସେ ସହରକୁ ?

ତମେ ତ ଶିଖାଇଥିଲା ନା ବାପା - ଆନ୍ତରୀକ କାମନାର କୌଣସି ପ୍ରାର୍ଥନା କେବେ ବିଫଳ ହୁଏ ନାହିଁ ବୋଲି। ମୁଁ ଭାବୁଛି ଦିନେ ନା ଦିନେ ତମ ପ୍ରାର୍ଥନାର ସ୍ୱର ପହଂଚିବ ଈଶ୍ୱରଂକ ପାଖରେ ଏବଂ ଆମେ ଫେରିଯିବା ଆମର ଅତୀତକୁ।

ବାପା ଆଉ କିଛି ନକହି ଚୁପ୍ ରହିଲେ, ହେଲେ ତାଂକର ପ୍ରସନ୍ନ ନୀରବତା ଗଭୀର ଆସ୍ଥାର ସୂଚନା ଦେଉଥିଲା।

ବାପାଂକୁ ଦେଇଥିବା ପ୍ରତିଶ୍ରୁତିର ଗମ୍ଭୀରତା କମି କମି ଯାଉଥିଲା ବେଳେ ଆଜି ଏତେ ବର୍ଷ ପରେ ହଠାତ୍ ଆସିଛି ସେ ସୁଯୋଗ। ତାଂକୁ ପ୍ରମୋଶନ ମିଳିବା ଦିନ ସେ ଖୁସି ହୋଇଥିଲେ ସତ, ହେଲେ ସବୁଠୁ ବେଶି ଖୁସି ହେଲେ ଯେତେବେଳେ ତାଂକୁ ପୋଷ୍ଟିଂ ମିଳିଲା ସେ ଜିଲ୍ଲାର ଜିଲ୍ଲାପାଳ ଭାବେ। ତୁରନ୍ତ କାର୍ଯ୍ୟରେ ଯୋଗଦେବାର ନିର୍ଦ୍ଦେଶନାମା ପାଇ ଅପରାହ୍ଣରେ ବାହାରିଲେ ରାଜଧାନୀରୁ। ବାପାଂକ ଠାରୁ ବିଦାୟକାଳୀନ ଆଶୀର୍ବାଦ ନେବା ବେଳେ ସେ କହିଲେ - ମୁଁ ଭାବୁଛି ତୋ'ର ଏ ପୋଷ୍ଟିଂ ବିଧିନିର୍ଦ୍ଦେଶିତ। ହଉ ଯାଆ...।

ନିଜ ଜିଲ୍ଲାର ପରିସୀମା ଛୁଇଁବା ପାଇଁ ମନଥିଲା ବ୍ୟାକୁଳ। ଜିଲ୍ଲାର ସୀମାରେଖା ଫଳକ ଦେଖି ଗାଡି ରଖି ପ୍ରଣାମ କଲେ - ଜିଲ୍ଲାର ମାଟିକୁ। ମାଧପୁର ଛକରୁ ଗାଡି ମୋଡିବା କ୍ଷଣି ପରିବେଶ ଲାଗିଲା ତାଂକୁ ଆପଣା ଆପଣା। କୌଶୋରରେ ଦେଖିଥିବା ଜଂଗଲରେ ଘଂଚ ଓ ନିବିଡ ସବୁଜିମା ନଥିଲା, ବାପା ମାଆ ଛେଉଣ୍ଡ ପିଲା ପରି ଦିଶୁଥିଲେ ଲଣ୍ଡା ଓ ଲଂଗଳା। ଜହ୍ନରାତିର ମାୟା ଲାଗିଥିଲା ଜଂଗଲରେ, ହେଲେ ସେ ମାୟା ଭୟାଚ୍ଛନ୍ନ କଳା ପରି ଉତ୍ତାଳ ନଥିଲା।

ଗାଡି ଗଡୁଥିଲା ପାହାଡି ରାସ୍ତାରେ। ଜହ୍ନ ଆଲୁଅ ଯୋରି ଯୋରି ହୋଇ ବିଂଚି ହୋଇ ପଡିଥିଲା ପାହାଡ଼ ଉପରେ। ସେ ମନେ ମନେ ଭାବୁଥିଲେ - ଏ ଜିଲ୍ଲାରୁ ସିନା ଦିନେ ବାପାଂକୁ ବେଘର ହେବାକୁ ପଡିଥିଲା ହେଲେ ମୁଁ ଏବେ ଏ ଜିଲ୍ଲାର ପାଳକ। ସମଗ୍ର ରାଜ୍ୟକୁ ଜୟ କରିସାରିବା ପରେ ରାଜଉଆସ ଯୁଦ୍ଧରେ ଭାଂଗିଯାଇଛି ବୋଲି ଭାଂଗି ପଡିବି କାହିଁକି ? ରାଜ୍ୟ ମିଳିଲା ପରେ ଉଆସ ବା ଆଉ କେଉଁ ବଡ଼ କଥା ?

ସର୍କିଟ୍ ହାଉସରେ ପହଂଚିବା ବେଳକୁ ଅପେକ୍ଷା କରିଥିଲେ ସମସ୍ତ ଅଧସ୍ତନ ଅଫିସର ବର୍ଗ। ଫୁଲ ତୋଡା ଦେଇ ସ୍ୱାଗତର ପର୍ବ ସରିବା ପରେ ମନୋଜ ବାବୁ କହିଲେ - ରାତି ଯଦିଓ ଅଧିକ ହୋଇନି, ମୁଁ ଯାତ୍ରାଜନିତ କ୍ଳାନ୍ତ। ଆପଣମାନେ ଏବେ ସମସ୍ତେ ଯାଇପାରନ୍ତି। ମୁଁ ଖାଇସାରି ବିଶ୍ରାମ ନେବି। ହଁ - କେବଳ ଡ୍ରାଇଭରକୁ କହିଥିବେ ରହିବା ପାଇଁ।

ଖାଇ ସାରିବା ପରେ ଡ୍ରାଇଭରକୁ କହିଲେ - ଖାଇ ସାରିବା ପରେ ରାତିରେ ମୁଁ କିଛି ସମୟ ବୁଲା ବୁଲି କରେ। ହେଲେ ମୁଁ ତ ଏଠାରେ ନୂଆ, ଚାଲିଚାଲି ହେବନି। ଗାଡି ବାହାର କର, ସହରକୁ ଘେରାଏ ବୁଲି ଆସିବା। ତିରିଶ ବର୍ଷର ବ୍ୟବଧାନ କିଛି କମ୍ ବ୍ୟବଧାନ ନୁହେଁ। ନା ସହରକୁ ନା ସହରର ରାସ୍ତା ଘାଟକୁ ଚିହ୍ନି ପାରୁଥିଲେ ସେ। ଡ୍ରାଇଭର ଗାଡି ବାହାର କଲା କ୍ଷଣି ଜଳାଇଲା ନାଲିବତୀ। ତାକୁ ଡାକି କହିଲେ ଏ ନାଲିବତୀକୁ ବାହାର କରିଦିଅ ନଚେତ୍ ବନ୍ଦ କର। ଏ ବତୀ ଲଗାଇ କ'ଣ ବୁଲି ହେବ ସହରକୁ ?

ଡ୍ରାଇଭର ବତୀ ବନ୍ଦ କଲା। ବସି ସାରିବା ପରେ କହିଲେ ଚାଲ କରଣ ସାହି ପଟ ନଦୀ କୂଳକୁ। ଦେଖି ଦେଖି ଯାଉଥିଲେ ଦୁଇପଟର ଘର। ପ୍ରାୟ ଅଧିକାଂଶ ଘର ଏବେ କୋଠା, କାଁ ଭାଁ କେଉଁଠି ଗୋଟେ ଯୋଡେ ଘର ତା'ର ପୁରୁଣା ରୂପରେ ଅଛନ୍ତି। ନଦୀକୂଳ ଆସିବା କ୍ଷଣି ଡ୍ରାଇଭର କହିଲା - ସାହେବ ନଦୀ କୂଳ ହେଲା।

ଆଁ - ନଦୀ କୂଳ ହୋଇଗଲା, ଜମା ଜାଣି ହେଲାନି। ହଉ, ତୁ ଏଠାରେ ଗାଡି ରଖି ଭିତରେ ବସିଥା। ମୁଁ ଟିକିଏ ବାହାରେ ବୁଲା ବୁଲି କରି ଆସୁଛି।

ଗାଡିରୁ ଓହ୍ଲାଇବା କ୍ଷଣି ଆଖିକୁ ପହଁରାରେ ନେଲେ ସେ ଜାଗା ଉପରେ। ଖୋଜିଲା ଖୋଜିଲା ହୋଇ ଖୋଜୁଥିଲେ ସେ ଗୋଟେ ଘର, ଯେଉଁଠି ଜଳିଥିଲା ତାଂକ ଏନ୍ତୁଡିଶାଳର ନିଆଁ, କଟିଥିଲା ବାଲ୍ୟକାଳ, ଶୈଶବ, କୈଶୋର ଓ ଆଦ୍ୟ ଯୌବନ। କ୍ରମ ବର୍ଦ୍ଧିଷ୍ଣ ସହରର ବଦଳି ଯାଉଥିବା ରୂପରେଖ ଭିତରେ ସେ ଖୋଜି ପାଉନଥିଲେ ସେ ଘରଟିକୁ। ଖୋଜୁଥିଲେ ଅନ୍ଧାରରେ। ଦୁଇପଟର ସୁଉଚ୍ଚ ଅଟ୍ଟାଳିକା ମଧ୍ୟରେ ଚିପି ହୋଇ ଲାଜରେ ସାଂକୁଡି ହୋଇ ଠିଆ ହୋଇଥିବା ଜରାଜୀର୍ଣ୍ଣ ଘରଟିକୁ ସେ ଶେଷକୁ ଖୋଜି ପାଇଲେ। ଅନ୍ଧାରରେ ଚାହିଁଲେ ଏପଟ ସେପଟକୁ-କାଳେ କେହି କୁଆଡ଼େ ଦେଖୁନାହାନ୍ତିତ। ନାଁ - ଏ ସହର ପାଇଁ ଏ ସମୟଟା

ଗଭୀର ରାତ୍ରୀ। ସମସ୍ତେ ଚୁପ୍ ଚାପ୍ ଶୋଇଛନ୍ତି। ମୁଣ୍ଡ ଲଗାଇ ପ୍ରଣାମ କଲେ ସେ ମାଟିକୁ, ଚିମୁଟାଏ ମାଟି ଉଠାଇ ତିଳକ ପରି ମୁଣ୍ଡରେ ଲଗାଇଲେ। ସେଠାରୁ ଚାଲିଲେ ସିଧା ନଈ କୂଳ। ପାହାଚ ପରେ ପାହାଚ ଓହ୍ଲାଇ ସେ ଯାଉଥିଲେ ନଈ ଆଡ଼କୁ। କ୍ଷୀଣବକ୍ଷା ହୋଇଗଲାଣି ମହାନଦୀ ବୋଧେ। ବାର ପାହଚରେ ଲହଡି ଖେଳୁଥିବା ପାଣି ଏବେ ନାଇଶ ପାହାଚ ଯାଏ ଖସି ଗଲାଣି। ଯୁଦ୍ଧ କ୍ଷେତ୍ରରେ ଲଗାଯାଇଥିବା ଛୋଟ ଛୋଟ ଶିବିର ପରି ନଈ ଭିତରେ ମୁଣ୍ଡ ଟେକିଥିବା ପଥର ମୁଣ୍ଡିଆ ମାନ ଜହ୍ନ ଆଲୁଅରେ ଲାଗୁଥିଲେ ଖୁବ୍ ଜୀବନ୍ତ ଜୀବନ୍ତ। ପଥର ସନ୍ଧିରେ ପିଛିଳି ଯାଉଥିବା କ୍ଷୀଣ ସ୍ରୋତର କଳ କଳ ନାଦ ତାଂକୁ କଲା ବିଭୋର। ଦଣ୍ଡେ ଠିଆ ହେଲେ ଶୁଣିବାକୁ ପ୍ରବାହର ସଂଗୀତ। ତାଂକୁ ଲାଗିଲା - ହଠାତ୍ ବଦଳିଗଲା ସଂଗୀତର ସ୍ୱର, ଶୁଭୁଲା ଏ ସ୍ୱର ଯେମିତି ପ୍ରଶ୍ନଟିଏ ପଚାରୁଛି - କ'ଣ ଏତେ ଦିନ ପରେ ମନେ ପଡିଲା ? ତୁ ପା' ମୋତେ ମାଆଁ ପରି ଭଲ ପାଉଥିଲୁ ବୋଲି ମହାନଦୀ ମହାକାବ୍ୟ ଲେଖିଥିଲୁ ? କେମିତି ଭୂଲି ଗଲୁରେ ମାଆକୁ ?

ଆଂଜୁଳାଏ ପାଣି ଧରି ସ୍ମରଣ କଲେ ମହାମାତାଙ୍କୁ। ପାଦୁକା ପରି ପାଇଲେ ଜଳତର୍ପଣତାର ଅବଶିଷ୍ଟାଂଶକୁ। ମୁହଁ ଫେରାଇ ପାହାଚ ଚଢ଼ିବା ବେଳେ ମନକୁ ମନ କହିଲେ - ସେତେବେଳେ ମୋ ପାଦ ଦୁର୍ବଳଥିଲା ବୋଲି ଭାସି ଯାଇଥିଲି ତୋ' ଠାରୁ ଦୂରକୁ। ଏବେ ମୁଁ ସବଳ ହୋଇ ଫେରିଛି, ଏବେ ତୋ' ବକ୍ଷକୁ କେବଳ ନୁହଁ ସମଗ୍ର ଦୁନିଆଁକୁ ସନ୍ତରଣ କରିବାର ଦକ୍ଷତା ମୁଁ ରଖିଛି। ଉଜୁଡ଼ା ନୀଡ଼କୁ ସଜାଡିବାର ସ୍ୱପ୍ନ ନେଇ ଆସିଛି। ଏଥର ବେଘର ହେବାର ଭୟ ନାହିଁ ନା ତୋ ଠାରୁ ଦୂରେଇ ଯିବାର ସମ୍ଭାବନା ନାହିଁ।

ସର୍କିଟ୍ ହାଉସକୁ ଫେରିବା ବେଳକୁ ଢ଼େର ରାତି ହେଲାଣି। ଡ୍ରାଇଭରକୁ ବିଦା କରି ଦେଇ ସେ ଗଲେ ବିଶ୍ରାମ ନେବାପାଇଁ।

ପରଦିନ ସକାଳୁସକାଳୁ ସେ ଆରମ୍ଭ କଲେ ନିଜ କାର୍ଯ୍ୟର ରୂପ ରେଖ। ଷ୍ଟେନୋକୁ ଡାକି କହିଲେ - ସମସ୍ତ ଅଫିସରଙ୍କୁ ଖବର ଦିଅଯେ କେହି କଲେକ୍ଟରେଟ୍ ଆସିବେ ନାହିଁ ମୋତେ ସ୍ୱାଗତ କରିବା ପାଇଁ। ସମସ୍ତେ ନିଜ ନିଜ ଅଫିସ୍‌ରେ ଥିବେ, ମୁଁ ଯାଇ ପହଂଚିବି ସେମାନଂକ ଅଫିସରେ।

ଏ.ଡି.ଏମ୍‌ଙ୍କ ଅଫିସ୍, ଡି.ଆଇ.ଡି.ଏ., ସବ୍‌କଲେକ୍ଟର, ତହସିଲ ଅଫିସ୍ ଇତ୍ୟାଦି ପରିଦର୍ଶନ ପରେ ସେ ଯାଇ ପହଂଚିଲେ ଡିଷ୍ଟ୍ରିକ୍ଟ ରେଜିଷ୍ଟ୍ରେସନ ଅଫିସରେ। କିଛି ବି ପରିବର୍ତ୍ତନ ଘଟିନଥିଲା ସେ ଅଫିସରେ ସେହି ରାଜା ରୁଜୁଡ଼ା ସମୟର ପୁରୁଣା ଘର। ଲମ୍ବା ହୋଇ ବାରଣ୍ଡା ପରି ଏକ ଅଣଓସାରିଆ ଘର, ଶେଷ ମୁଣ୍ଡକୁ ଟିକିଏ ଉଚ୍ଚା ହୋଇ ବଡ଼ ରୁମ୍‌ଟିଏ। ରୁମ୍ ଭିତରେ ଗୋଟେ ପେଣ୍ଡାଲ ଭଳି ଜାଗାର ମଝିରେ ଜିଲ୍ଲା ନିବନ୍ଧନ ଅଫିସରଙ୍କ ଟେବୁଲ,

ସାମ୍ନାରେ ସାଲୁର କନାକୁ କାଠଗଡ଼ା ଉପରେ କଭର ଦିଅଯାଇ ଅଲଗା ଅଲଗା ଦୁଇଟି ସ୍ଥାନ ଥିଲା- ଗୋଟେ ବାୟା ପାଇଁ ଓ ଅନ୍ୟଟି ମୁସ୍ତରୀର ପାଇଁ।

ସେ ପହଂଚୁ ପହଂଚୁ ଜିଲ୍ଲା ନିବନ୍ଧନ ଅଧିକାରୀ ତାଂକୁ ପାଛୋଟି ନେଲେ ନିଜ ଆସନ ନିକଟକୁ। ଚେୟାର ଉପରେ ବସିବା ପୂର୍ବରୁ ଚାରିପଟକୁ ଥରେ ଆଖି ବୁଲାଇଲେ। କିଛି କ୍ଷଣ ଚାହିଁଲେ ସେ ଚେୟାରଟି ଆଡ଼େ। ସେ ଚେୟାରଟି ଲାଗିଲା ତାଂକୁ ଚିହ୍ନା ଚିହ୍ନା। ଅବଶ୍ୟ ସେତେବେଳେର କଳା ମଚ୍ ମଚ୍ ଶିଶୁକାଠରେ ଅଶୋକ ଚକ୍ର ଖୋଦେଇ ଚେୟାରଟି ଏବେ ପରିବର୍ତ୍ତିତ ହୋଇ ଯାଇଥିଲା ରିଭଲଭିଂ ଚେୟାରରେ। ମାତ୍ର ସ୍ଥାନ ପ୍ରବଳମ୍ ନ୍ୟାୟରେ ଆଜି ବି ଚେୟାରଟି ଲାଗୁଥିଲା ଶୈଶବରୁ ଭୟ ଓ କୌତୁହଳରେ ଲୁଚି ଛପି ଦେଖି ଆସିଥିବା ବିକ୍ରମାଦିତ୍ୟଙ୍କର ସିଂହାସନ ପରି।

ଚେୟାରରେ ବସି ସାରିବା ପରେ ସେ ଚାହିଁଲେ ସାମ୍ନାର ଲମ୍ବା ଅର୍ଗଳୀରେ ଧାଡ଼ି ହୋଇ ବସିଥିବା ଅମାତ୍ୟ ମାନଂକୁ। ଆଖି ଅଟକି ଗଲା ସେହି ନିର୍ଦ୍ଦିଷ୍ଟ ଜାଗାରେ - ଯେଉଁଠି ଗୋଟେ ହାତ ନ ଥିବା କାଠ ଚେୟାର ଉପରେ ବାପା କଟାଇ ଦେଇଥିଲେ ତାଂକ ଚାକିରି କାଳ। ଲାଗୁଥିଲା ସେ ଯେମିତି ଫେରିଯାଉଛନ୍ତି ପଚ୍ଚିଶ ବର୍ଷ ତଳକୁ ଏବଂ ସ୍କୁଲ ଫେରନ୍ତା ବାଟରେ ବାପାଂକ ଅଫିସକୁ ପଶି ଆସି ଲୁଚି ଲୁଚି ଚାହୁଁଛନ୍ତି ଏ ଚେୟାରଟି ଆଡେ। ଅଫିସର ନଥିବାରୁ ପରଦା ଟେକି ସନ୍ତର୍ପଣ ଓ ସଂଭ୍ରମରେ ଚାହୁଁଛନ୍ତି ଏବଂ ଭାବୁଛନ୍ତି ବଡ଼ ହେଲେ ବସନ୍ତିକି ଏମିତିକା ଏକ ଚେୟାରରେ। କିଛି ସମୟ ପାଇଁ ସେ ହୋଇ ପଡ଼ିଲେ ଅନ୍ୟମନସ୍କ ଓ ଭାବପ୍ରବଣ, କିଂତୁ ପରମୁହୂର୍ତ୍ତରେ ନିଜକୁ ପ୍ରକୃତିସ୍ଥ କରିନେଇ ଭାବିଲେ ଏପରି ଭାବପ୍ରବଣତା ଦୁର୍ବଳତାର ଲକ୍ଷଣ ହୋଇପାରେ ଯାହା ଜଣେ ପ୍ରଶାସକ ପାଇଁ ଆଦୌ ଶୋଭନୀୟ ନୁହେଁ।

ଜିଲ୍ଲା ନିବନ୍ଧନ ଅଧିକାରୀଙ୍କୁ ସେ ପଚାରିଲେ - ଏ ଅଫିସରେ ସବୁଠାରୁ ପୁରୁଣା ଷ୍ଟାଫ କିଏ ?

କିଛି ସମୟ ପାଇଁ ଚିନ୍ତାକଲା ପରେ ନିବନ୍ଧନ ଅଧିକାରୀ କହିଲେ - ସବୁଠୁ ପୁରୁଣା ଷ୍ଟାଫ୍ କହିଲେ ବାନାମର କର୍ଣ୍ଣ ଆଜ୍ଞା। ଏଇ ଅଫିସରେ ଚାକିରି ଆରମ୍ଭ କରିଥିଲା ରେକର୍ଡ କିପରି ଭାବେ, ବହୁବର୍ଷ ରେକର୍ଡ କିପର୍ ରହିବା ପରେ ପ୍ରମୋଶନ ପାଇ କିରାଣୀ ହୋଇଛି, ଆସନ୍ତା ମାସକୁ ରିଟାୟାର୍ଡ କରିବ।

ସେ ଅଛନ୍ତି ଅଫିସରେ ?

ହଁ - ଆଜ୍ଞା, ଡକାଇ ଦେବିକି ?

ନାଇଁ ଥାଉ, ତାଂକୁ କହିବେ ଅଫିସ୍ କାର୍ଯ୍ୟ ସରିବା ପରେ ମୋତେ ସନ୍ଧ୍ୟା ବେଳକୁ ଭେଟିବେ।

ଜିଲ୍ଲାପାଳ ଭେଟିବାକୁ ଚାହୁଁଚନ୍ତି ବାନାମର କର୍ଣ୍ଣଙ୍କୁ - ଏ ଖବର ଶୁଣିବା ପରେ ତା'ମୁଣ୍ଡରେ ଚଡ଼କ ପଡିବା ପରି ଲାଗିଲା। କ'ଣ କେଉଁଠି କୌଣସି ତ୍ରୁଟି ହୋଇଗଲାକି ? ମନେ ମନେ ଭାବିଲା। ସହକର୍ମୀମାନେ କହିଲେ - ନୂଆ ଜିଲ୍ଲାପାଳ, ସବୁଠୁ ପୁରୁଣା ଷ୍ଟାଫ୍‌କୁ ଭେଟିବାକୁ ଚାହୁଁଛନ୍ତି ମାନେ ସିଏ କିଛି ଭେଦ ବୁଝିବାକୁ ଚେଷ୍ଟା କରୁଥିବେ। ତମର ଡରିବାର କ'ଣ ଅଛି ? ତମର ତ ମାଡି ମାଡି ଆଉ ମାସଟିଏ ଚାକିରି, ଏଥିରେ ତମକୁ ସେ ବା କାହିଁକି କେଉଁଠିକୁ ବଦଳି କରିବେ ନା ଆଉ କିଛି କରିବେ। କିଛି ବିଷୟ ହୁଏତ ବୁଝିବାକୁ ଚାହୁଁଥିବେ ଏ ଅଫିସ୍‌ର କାରବାର କିମ୍ବା ଅଫିସରଙ୍କ ବିଷୟରେ। ହଁ - ଦେଖି ଚାହିଁ ଯାହା ପଚାରିବେ ଉତ୍ତର ଦେବ, ଅଫିସରଙ୍କ ବିଷୟରେ କିଛି କହିବ ନାହିଁ ଏବେ ବି ସେ ଯଦି ଚାହିଁବେ ତେବେ ତମର ପେନ୍‌ସନ୍ ଗଣ୍ଡାକ ବି ମିଳିବ ନାହିଁ।

ଡରି ଡରି ଯାଇ ବାନାମର କର୍ଣ୍ଣ ପହଂଚିଲା ସର୍କିଟ ହାଉସରେ ସନ୍ଧ୍ୟା ବେଳକୁ। ତାକୁ ଦେଖି ପକାଇ ଆଟେଣ୍ଡାଣ୍ଟ୍‌ଟି ପଚାରିଲା - ବାନା ମଉସା, କୁଆଡ଼େ ଆସିଲ ?

କଲେକ୍ଟର ସାହେବ କ'ଣ ପାଇଁ ଡକାଇଛନ୍ତି ବୋଲି ଆସିଛି।

କଲେକ୍ଟର ସାହେବ ତମକୁ ଡକାଇଛନ୍ତି !

ହଁ।

ତମେ ଠିକ୍ ଖବର ପାଇଛ ତ ? ଇଏତ ଏବେ ନୂଆ ଆସିଛନ୍ତି।

ହଁ - ଆମ ଅଫିସର ତ ମୋତେ କହିଲେ।

ହଉ ରୁହ ମଉସା - ସାର୍ ଏବେ ଏବେ ଫେରିଛନ୍ତି, ଫ୍ରେଶ୍ ହେଉଥିବେ। ମୁଁ ଖବରଟା ଦେଇଦିଏ, ଡକାଇଲେ ଯିବ।

ଖବର ନେଇ ଯାଇଥିବା ଆଟେଣ୍ଡାଣ୍ଟ ହାତରେ ଭିତରକୁ ଯିବାର ଖବର ଆସିଲା। ଅତି ସନ୍ତର୍ପଣରେ ଡରି ଡରି ଭିତରକୁ ଗଲା। ଏଇଟା ଜୀବନରେ ତାର ପ୍ରଥମ ଥର କୌଣସି କଲେକ୍ଟରଂକ ସାମ୍ନାକୁ ସିଧା ସିଧି ଯିବାର।

କଲେକ୍ଟର ତାକୁ ଦେଖୁ ଦେଖୁ ପଚାରିଲେ - କେତେ ବର୍ଷ ହେଲାଣି ଚାକିରି କରିଚ ?

ସାର୍ , ଚାଳିଶ ବର୍ଷ ହେଲାଣି।

କ'ଣ ମୂଳରୁ ଏ ଅଫିସରେ ଅଛ ?

ହଁ - ସାର୍, ଏଇ ଅଫିସରେ ଜଏନ୍ କରିଥିଲି, ଆଉ ମାସକୁ ରିଟାୟାର୍ଡ କରିବି।

ମୋହିନୀ ମୋହନ ପଟ୍ଟନାୟକଂକୁ ତାହାଲେ ଚିହ୍ନିଥିବ ?

ଚିହ୍ନିବିନି କିପରି ଆଜ୍ଞା - ଭଲ କରି ଜାଣିଛି, ଦେବତା ସମ ଲୋକ ସିଏ, ଲାଂଚ, ମିଛ, ଖାଚ ତାଂକ ଦେହି ହେଉନଥିଲା ବୋଲି ପରା ସିଏ ଚାକିରି ସହ ପିଲାଂକୁ ପାଠ ପଢ଼ାଉଥିଲେ,

ମାନେ ଟିଉସନ୍ କରୁଥିଲେ। ପ୍ରଥମେ ମାଷ୍ଟ୍ର ଥିଲେ ତ ସେଇଥି ପାଇଁ। ଏ ସହରରେ କାହା ଦେହରେ ତାଂକ ଛାଟ ବାଜିନି ଯେ, ମୁଁ ପରା ତାଂକର ଛାଟ ଢ଼େର ଖାଇଛି। ତାଂକ ଛାଟ ଯେତେ ବାଜିଲେ ବି ମୁଁ ତ ଗୋବର ଗଣେଶ ଥିଲି ନା, ମୋ ଦେହି ପାଠ ଶାଠ ହେଲାନି। ଛାଡ଼ି ଦେଲି ପାଠ, ବୁଲିଲି ବାତରା ହୋଇ। ସିଏ ହିଁ ତ ମୋତେ କୂଳରେ ଲଗାଇବା ପାଇଁ ଏଠି ଆଣି ଚାକିରିରେ ପୂରାଇଥିଲେ, ନଚେତ୍ ମୁଁ କିଏ ନା ଚାକିରି କିଏ, ଏଇନେ ହଳ କରୁଥାଆନ୍ତି ବିଲରେ।

ଭଲ ଲୋକ! ସିଏ ପରା ଅଫିସ୍ ଟଂକା ହେରଫେର କରିଥିଲେ ? ଭଲ ଲୋକ କେମିତି ?

ଆଜ୍ଞା ଛୋଟ ମୁହଁରେ ବଡ଼ କଥା - ଏ ଦେଶରେ ତ ପୁଣି ସୀତା ମାତାଂକୁ ଅସତୀର ଆଖ୍ୟା ମିଳିଥିଲା। ତାଂକ ବେଳେ ସିନା ଧରିତ୍ରୀ ଫାଟି ଯାଇ ପାରୁଥିଲା ବୋଲି ସିଏ ପରୀକ୍ଷା ଦେଇ ପାରିଲେ, ନଚେତ୍ ଲୋକ ତ ତାଂକୁ ଅସତୀ ବୋଲି ଧରି ନେଇ ଥାଆନ୍ତେ। ହେଲେ ଆମ ବଡ଼ ବାବୁଙ୍କ ପାଇଁ କ'ଣ ଧରିତ୍ରୀ ଫାଟି ପାରିଲା ? କିଂତୁ ଧର୍ମ ଥିଲା ଆଜ୍ଞା, ବର୍ଷେ କେଇଟା ଯାଇନି ସେଇ ଅଫିସର ହାର୍ଟ ଆଟାକରେ ମଲେ, ଯେଉଁ କିରାଣୀ ତାଂକ ସହ ସାମିଲ ହୋଇଥିଲା ସିଏ ବି ପାରାଲିସିସ୍‌ରେ ବହୁଦିନ ଯାଏ ଘୋଷାରି ଘୋଷାରୀ ହୋଇ ମଲା। ଧର୍ମ ନଥିଲେ କ'ଣ ଏକଥା ହୋଇଥାଆନ୍ତା ?

ଘଟଣା କ'ଣ ଥିଲା ?

ଘଟଣା କିଛି ନୁହେଁ ଆଜ୍ଞା - ଜମି ରେଜିଷ୍ଟ୍ରିଟଂକା ତହବିଲରେ ରହେ, ମାସ ଶେଷରେ ଥରେ ଟ୍ରେଜେରୀ ଡିପୋଜିଟ୍ ହୁଏ। ସେ ମାସ ଦଶ ହଜାର ଟଂକା ଥିଲା। ଅଫିସରଂକ କ'ଣ ଗୋଟିଏ କାମ ପଡିଲା ସେ ଟଂକାକୁ ନେଇଥିଲେ ମାସ ଶେଷକୁ ଡିପୋଜିଟ୍ ବେଳକୁ ଦେଇ ଦେବେ ବୋଲି। ହେଲେ ହଠାତ୍ ଅଡିଟ୍ ହେଲା - କ୍ୟାସ୍ ସଟେଜ୍ ଧରାପଡିଲା, ଯେହେତୁ ବଡ଼ ବାବୁଂକ ହେପାଜତ୍‌ରେ ଟଂକା ଥିଲା ସିଏ ଦୋଷୀ ହେଲେ, ତାଂକୁ ରିକଭରି ପାଇଁ କୁହାଗଲା। ସେତେବେଳେ ଦଶ ହଜାର ଟଂକା କ'ଣ କମ୍ କି କିଏ ଆଣି କେଉଁଠୁ ଭର୍ତ୍ତି କରିଦେବ। ଅଫିସର ତ ଆଉ ଧରାଛୁଆଁ ଦେଲେନି ଏଣେ ଟଂକା ନଭରିଲେ ଜେଲ୍ ଯିବାକୁ ପଡିପାରେ, ସେଥିପାଇଁ ନିଜ ପୈତୃକ ଘରକୁ ବିକ୍ରି କରି ଟଂକା ଭରିଲେ। ତାଂକ ଚାକିରିଟି ବଂଚିଗଲା। ଅବଶ୍ୟ ସେତେବେଳକୁ ତାଂକର ଚାକିରୀ ଆଉ ଅଳ୍ପଦିନ ଥିଲା।

ସେ ଘର କିଏ କିଣିଥିଲା ?

କିଏ ଆଉ କିଣିବ ଆଜ୍ଞା, ଯେଉଁ କିରାଣୀଟି ଅଫିସରଂକ ସହ ସଲାସୁତରା ହୋଇ ଏଇ ଭିଆଣ ଭେଇଥିଲା, ସିଏ କିଣିଥିଲା। ହେଲେ କ'ଣ ହେବ କିଣି ଦେଲା ସିନା ଜୀବନସାରା

ଅପୁତ୍ରିକ ରହିଲା। ମାଡି ମାଡି ଗୋଟିଏ ଝିଅ ଥିଲା, ସିଏ ବାହାହୋଇ ବିଦେଶରେ, ଏଠିକା ଘରକୁ ଦେଖାରେଖା କଲା ନା ଆଉ ଆସିଲା। ବାପାମାଆ ମଲା ବେଳକୁ ବି ଆସି ପାରିଲା ନାହିଁ, ଟଂକା କେତୁଟା ପଠାଇ ଦେଇଥିଲା ଜ୍ଞାତି କୁଟୁମ୍ବ ମାନଂକ ପାଖକୁ କ୍ରିୟା କର୍ମ କରିବାକୁ। ମନ୍ଦ କର୍ମରତ ମନ୍ଦ ଫଳ ଫଳିବ ନା। ଏବେ ଶୁଣୁଛି ସେ ଝିଅ କୁଆଡ଼େ ସେ ଘରଟାକୁ ବିକି ଦେବ। ଘର କ'ଣ ବା, ସବୁ ତ ଭାଂଗିଭୁଂଗି ଗଲାଣି ଜାଗାଟା ଯାହା। ଏଇଟା ଜିଲ୍ଲା ମହକୁମା ହେବାରୁ ଜମିର ଦାମ୍ ବଢ଼ିଯାଇଛି, ନଚେତ୍ କିଏ କାହିଁକି ପଚାରନ୍ତା ସେ ଜାଗାକୁ ?

ସେ ଜାଗାକୁ ବିକିବା ପାଇଁ ସେ କାହା ସହ ଯୋଗାଯୋଗ କରୁଛନ୍ତି ?

ସିଏ ତ ବରହମ୍ପୁରିଆ କୁମୁଟି ଲୋକ, ତାଂକର ଜ୍ଞାତି କୁଟୁମ୍ବ ଏଠାରେ କେହି ନାହାନ୍ତି, ତହସିଲ ଅଫିସର ପିଅନଟାଏକୁ ତା' ମାଆ ଧରମ ପୁଅ କରିଥିଲା। ସିଏ ବୁଝା ବୁଝି କରୁଛି। ଶୁଣୁଛି ସିଏ ଆଉ ଏଠିକୁ ନ ଆସି ପାୱାର ପଠାଇବ ତା' ପାଖକୁ କୁଆଡ଼େ ଜମି ବିକିବାକୁ। ଆମରି ଅଫିସରେ ତ ସେ କାମ ହେବନା, ହଜୁର ଚାହିଁଲେ ମୁଁ ଆଗରୁ ଜଣାଇ ଦେବି।

ନାଇଁ - ଜଣାଇ ଦେବ ନାହିଁ ନୁହେଁ, ବ୍ୟବସ୍ଥା କର ସେ ଜାଗାଟିକୁ ଯେମିତି ମୁଁ କିଣିପାରେ।

ସାର୍ ଦୋଷ ଘେନା ନ କରିବେ ଯଦି ଗୋଟିଏ କଥା ପଚାରିବି ?

ପଚାର।

ବଡ଼ ଦୁଇଜଣଙ୍କୁ ମୁଁ ଏବେ ବି ଦେଖିଲେ ଚିହ୍ନି ପାରନ୍ତି, କାରଣ ସେମାନଂକ ସହ ବହୁତ ଖେଳ କୁଦ କରିଛି। ବୟସ ବଢ଼ିଯାଇଥିଲେ ବି ଛୋଟ ବେଳର ଛାପଟା ନିଶ୍ଚୟ ଥିବ। ହେଲେ ସାନ ଦୁଇଜଣଂକୁ ମୁଁ ଯେତେବେଳେ ଦେଖିଥିଲି ବହୁତ ସାନ ସାନ ଥିଲେ। ମୁଁ ତ ବାତରା ହେବାରୁ ମୋ ବୋଉ ମୋତେ ଢ଼େର ଦିନ ମାମୁଁ ଘରେ ରଖାଇଥିଲା ସୁଧୁରି ଯିବା ପାଇଁ, ହେଲେ ସେତେବେଳେ ତ ମୁଁ ଅଂଗାର ଥିଲି ନା - ମୋତେ କ୍ଷୀରରେ ଧୋଇଲେ କି ମହୁରେ ମୋହିଲେ ମୋ ଗୁଣ କ'ଣ ଧଳା ହୋଇଥାଆନ୍ତା ? ସେଥିପାଇଁ ତ ବଡ଼ ବାବୁଙ୍କୁ କୁହା ବୋଲି କରି ମୋତେ ଏଥିରେ ଭର୍ତ୍ତି କରାଇ ଦେଇଥିଲା। ଆପଣଂକୁ ଆଜି ଦେଖିବା ପରଠାରୁ ମୋତେ ଲାଗୁଛି ଆପଣ ବଡ଼ ବାବୁଂକର ସାନପୁଅ ପରି।

ତମେ ଠିକ୍ ଚିହ୍ନିଛ, ହେଲେ ଏଇ ଚିହ୍ନିବାଟା କେବଳ ତମର ଆଉ ମୋ ଭିତରେ ରହୁ।

ବଡ଼ ବାବୁ ଏବେ କେଉଁଠି ?

ବାପା ଏବେ ରାଜଧାନୀରେ।

ସେ ଏବେ ତ ଏଠିକୁ ଆସିବେ ନିଶ୍ଚୟ ?

ନା - ଏ ସହରକୁ ତାଂକର ଭିଟା ମାଟି ଉଜୁଡି ଯାଇଛି ବୋଲି ସେ ଆଉ ଏଠାକୁ ନ ଆସିବାକୁ ଜିଦ୍ ଧରିଛନ୍ତି। ଯଦି ମୁଁ ତାଂକୁ ସେଇଟା ଫେରାଇ ଦେଇ ପାରିଲି, ତେବେ ହୁଏତ ସେ ଆସି ପାରନ୍ତି।

ତାଂକର ପୁଣ୍ୟଫଳ ଅଛି ଆଜ୍ଞା - ସେଇଥି ପାଇଁ ତ ଭଗବାନ୍ ଆପଣଂକୁ ଏ ଜିଲ୍ଲାର ରାଜା କରି ପଠାଇଛନ୍ତି। ଆପଣ ଚାହିଁଲେ ତ ସାରା ଜିଲ୍ଲା ଆପଣଂକୁ ମିଳିବ, ସେଇ ଡ଼ିଅଟା କ'ଣ ଅପୂର୍ବ ହେବ। ହେଇ ଦେଖନ୍ତୁ - ମୁଁ ଠିକିରିରୁ ରିଟାୟାର୍ଡ ପୂର୍ବରୁ ଆପଣଂକୁ କିପରି ସେ ଜାଗା ଫେରାଇଦେବାର ବନ୍ଦୋବନ୍ଦ କରୁଛି।

ଫେରି ଆସିଲା ଭିଟାମାଟି, ସଜଡ଼ା ଗଲା ଘର। ଚାରିଭାଇ ଯାକ ମିଶି ଯେଉଁ ଦିନ ବାପା, ବୋଉଂକୁ ଘରକୁ ଆଣିଲେ ସେ ଦିନ ଖୁସିରେ ଢ଼େର ସମୟ ଯାଏ ଲମ୍ବ ହୋଇ ପଡିରହିଲେ ଡ଼ିଅ ଉପରେ। ପିତୃ ପୁରୁଷଙ୍କ ଉଦ୍ଦେଶ୍ୟରେ ଦୁଇହାତ ଯୋଡି ଉପରକୁ ଉଠାଇ କହିଲେ - ମୋତେ ଏବେ ଆଉ ଲଜ୍ଜା କି ଶଂକୋଚ୍ ଲାଗିବ ନାହିଁ ଆପଣମାନଂକୁ ମୁହଁ ଦେଖାଇବା ପାଇଁ। ମୁଁ ଏବେ ବର୍ତ୍ତି ଯାଇଛି ଅଘରୀ ହୋଇ ମରିବାରୁ।

ଏହି ସମୟରେ ଅଦୂର ମନ୍ଦିରରେ ବାଜି ଉଠିଲା ସନ୍ଧ୍ୟା ଆଳତୀର ଘଣ୍ଟା। ମୋହିନୀ ମୋହନ ଡାକ ଛାଡ଼ିଲେ - ଆସରେ ପିଲାଏ ସନ୍ଧ୍ୟା ପ୍ରାର୍ଥନାରେ ବସ। ଗାଅ - ଆ ହେ ଦୟାମୟ ବିଶ୍ୱ ବିହାରୀ...। ସମବେତ ପ୍ରାର୍ଥନା ସ୍ୱରରେ ଯଦିଓ ନଥିଲା ସେହି ଦୀର୍ଘ ଅତୀତର ସ୍ୱର ତଥାପି ଭରିରହିଥିଲା ସେ ସ୍ୱରରେ ଗଭୀର ତଲ୍ଲୀନତା ଏବଂ ଆତ୍ମ ସମର୍ପଣ ଭାବ।

* * *

## ॥ ଭେଦ ॥

ସେ ଧାଉଁଥିଲା । ପାହାଡ଼ ଡେଇଁ, ଝରଣା ଡେଇଁ, ଜଂଗଲ ଡେଇଁ। ଥକି ପଡୁଥିଲା ପାଦ, ବଢ଼ି ଯାଇଥିଲା ହୃତ୍ କମ୍ପନ। ଲାଗୁଥିଲା ସତେ ଯେପରି ଦେହର ସବୁ ରକ୍ତ ମୁଣ୍ଡକୁ ଉଠି ଆସି ସାରିଲାଣି। ଯୁଆଡ଼େ ଆଖି ବୁଲାଇଲେ ଜଂଗଲ। ରାସ୍ତା ଥିଲା ଅସରନ୍ତି, ଅଥଚ ସେ ଧାଉଁ ଥିଲା। ତାକୁ ଜଣା ନ ଥିଲା ଥାନା କେତେ ଦୂରରେ। କେବଳ ଯାହା ଜାଣିଥିଲା ସହରରେ ଥାନା ଅଛି। ସେଠି ପହଂଚିଗଲେ ସବୁ ସମସ୍ୟାର ସମାଧାନ ହୋଇଯିବ।

ସହର ଯେ ଦେଖିନି ସେ କଥା ନୁହଁ। ଫି ମାସ ହାଟକୁ ଆସେ ନୁଣ, ତେଲ, ଯ୍ୟାଡୁ ସ୍ୟାଡୁ ଘର ସାମାନ୍ ଓ ଘରକରଣା ଜିନିଷ ନେବାକୁ। ବସ୍ତି ସାରା ଲୋକ ମେଳି ହୋଇ ବାହାରନ୍ତି ରାତି ଦି'ତିନି ଘଡ଼ି ପରେ। କାନରେ ପିକା, ହାତରେ ସଲପ୍ ଠେକି ଓ ଖାଇବା ଜିନିଷ ଧରି। ମାସରେ ଥରେ ହାଟକୁ ଯିବାଟା କୌଣସି ଜାନିଯାତରାକୁ ଯିବା ଠାରୁ କୌଣସି ଗୁଣରେ କମ୍ ରୋମାଂଚକର ନ ଥାଏ।

ଜଂଗଲର ପାଦ ଚଲା ରାସ୍ତା ଦେଇ ଚାଲନ୍ତି ଦଳ ବାନ୍ଧି। ପାଦ ଥକି ପଡି ଆଗକୁ ନ ପଡିଲେ ମଳା ହୋଇ ବସି ପଡନ୍ତି ସଭିଏଁ। ପିଆ ହୁଏ ସଲପ୍, ଟଣା ହୁଏ ପିକା। ପାଦର ଥକା ମେଣ୍ଟି ନ ଥିବ ଜଣେ କିଏ କହିବ - ଉଠରେ, ରାତି ପାହିବା ପାହିବା ହେଲାଣି, ସକାଳୁ ସକାଳୁ ଯେମିତି ପହଂଚିଯିବାନା। ପୁଣି ଆରମ୍ଭ ହୋଇଯିବ ଚାଲିବା।

ହେଲେ ଏଥରକ ସେ ଏକା। ମେଳି ହୋଇ ଚାଲିବା ବେଳେ ଜଣା ପଡ଼େନି ବାଟ, କିଂତୁ ଏଥର ତ ସେ ଚାଲୁନି, ଦୌଡୁଛି, ପୁଣି ଏକା-ଏକା। ଲାଗୁଛି ଯେତେ ଧାଇଁଲେ ବି ରାସ୍ତା ଯେମିତି ସରୁନି। ସାଂଗରେ ନାହିଁ ନିଆଁ ହୁଲା, ଡର ନାହିଁ ବାଘ ଭାଲୁଙ୍କୁ, ଡର ବି ନାହିଁ ଡୁମାକୁ - ସେ ଏକ ମୁହାଁ ହୋଇ ଧାଇଛି କେବଳ, ଥାନାରେ ପହଂଚି ଖବର ଦେଇଦେଲେ ସେମାନେ କିଛି ଗୋଟାଏ କରିବେ ବୋଲି।

ରାତି ଆହୁରି ଘଡିଏ ଥିଲା ସରିଗଲା ବାଟ। ଛୋଟ ସହରଟି ଶୋଇଥିଲା ନିଘୋଡ଼ ନିଦରେ। ମାର୍ଗଶୀର ମାସର କନ୍‌କନିଆ ଶୀତରେ ପାହାନ୍ତିଆ ପାହାନ୍ତିଆ ଓହ୍ଲାଉଥିବା ବସଯାତ୍ରୀଙ୍କୁ ଚା' ଯୋଗାଇ ଦେବାକୁ ବସ୍‌ଷ୍ଟାଣ୍ଡରେ ଖୋଲାଥିଲା କେବଳ ଛୋଟିଆ ଚା' ଦୋକାନଟିଏ। ଯାତ୍ରୀ କେହି ପହଂଚି ନଥିଲେ ସେତେବେଳକୁ। ପ୍ରସ୍ତୁତ ହୋଇଥିବା ଚା'କୁ ଗରମ ରଖିବା ପାଇଁ ଷ୍ଟୋଭର ଆଂଚକୁ କମାଇଦେଇ ବସିଥିଲା ଦୋକାନୀଟି। ଷ୍ଟୋଭର ସାଏଁ - ସାଏଁ ଶବ୍ଦ ଯାହା କିଛି ମାତ୍ରାରେ ଭାଂଗୁଥିଲା ରାତ୍ରୀର ନିସ୍ତବ୍‌ଧତାକୁ।

ସୁଦାନ ମାଡିକା ପଚାରିଲା - ବାବୁ ଥାନା କେଉଁଠି ? ଲୋକଟି ମୁହଁ ନ ଖୋଲି ବସିବା ଥାନରୁ ହାତ ଦେଖାଇ ଚିହ୍ନାଇ ଦେଲା ଥାନାକୁ।

ଥାନା ବାରଣ୍ଡାରେ ପହଂଚି ସୁଦାନ୍ ଦେଖିଲା କେହି ନାହାନ୍ତି ଥାନାରେ। ଜଣେ କିଏ ଗୋଟେ ଲମ୍ବା ବେଂଚ ଉପରେ କମ୍ବଳଟିଏ ଘୋଡ଼ାଇ ହୋଇ ଲମ୍ବା ଘୁଂଘୁଡି ମାରୁଚି, ଲାଗୁଛି ଯେମିତି ତା' ଘୁଂଘୁଡ଼ିରେ ଥାନାର ଛାତ ଉଠୁଛି ପଡୁଛି। ଲୋକଟିକୁ ଡାକିବ କି ନାହିଁ ଚିନ୍ତା କଲା। ଭାବିଲା ଏମିତି ନିଘୋଡ଼ ନିଦରୁ ଲୋକଟାକୁ ଉଠାଇଲେ ସେ ନିଶ୍ଚୟ ବିରକ୍ତ ହେବ। ବରଂ ଭଲ ହେବ ଅପେକ୍ଷା କରିବ, ରାତି ପାହୁ, ସକାଳେ କହିବ।

ଧାଇଁ ଧାଇଁ ଏତେ ବାଟ ଆସିଥିବାରୁ ଗୋଡ଼ ଲାଗୁଥିଲା ଛିଡ଼ି ପଡ଼ିଲା ପରି। ଆଉ ଛିଡ଼ା ହୋଇ ହେବନି ଭାବି ଗାମୁଛାଟାକୁ ବାରଣ୍ଡାରେ ବିଛାଇ ଚାରିକାତ ମେଲାଇ ଦେଲା। ଧୀରେ ଧୀରେ ମରୁଥିଲା ଝାଳ, ମେଣ୍ଟୁଥିଲା କ୍ଲାନ୍ତି। କନ୍‌କନିଆ ଶୀତରେ କୁଂକୁରୀ ହେଲା ଦେହ। ଘୋଡ଼ି ହୋଇଥିବା କବଟା ପଟକୁ ଦେହ ଉପରକୁ ଲମ୍ବାଇ ଦେଇ ଜାକି ଜୁକି ହୋଇ ଶୋଇଲା ସିଏ। ଥକ୍‌କା ଯୋଗୁ ଆଖିକୁ କେତେବେଳେ ନିଦ ଲାଗି ଯାଇଛି ସେ ଜାଣେନା।

ଆବେ ହେ - ଏଇଟାକୁ କଣ ଧର୍ମଶାଳା ପିଣ୍ଡା ପାଇଲୁ ନା କ'ଣ ଚାଲି ଆସିଲୁ ଶୋଇବା ପାଇଁ ? ଯାଉଛୁ ନା ଏଠୁ ନା ଦେଖିବୁ ଏ ବାଡିର ଗେବ କେମିତିକା ଲାଗେ ?

ଧଡ଼କିନା ଉଠି ବସିଲା ସୁଦାନ୍। ନିଦ ମଳ ମଳ ଆଖିରୁ ନିଦ ଛଡ଼ାଇବା ପାଇଁ ଦଳି ପକାଇଲା ହାତ ପାପୁଲିରେ। ଯମଦୂତ ପରି ସାମ୍ନାରେ ଠିଆ ହୋଇଥିବା ପୋଲିସ୍ ବାଲାକୁ ଦେଖି ପକାଇ କହିଲା - ମୁଁ ସୁଦାନ ମାଡିକା।

ଓହୋ - ତୁ ସୁଦାନ୍ ମାଡିକା, ମୋତେ ତାହାଲେ ଏବେ ତୋତେ ସଲାମ ଠୁକିବାର ଅଛି। କୁହ ମହାପ୍ରଭୁ ଥାନା ବାରଣ୍ଡାକୁ କ'ଣ ଧର୍ମଶାଳା ଭାବି ଶୋଇବାକୁ ଚାଲିଆସିଲ ?

ମୁଁ ରିପୋର୍ଟ ଲେଖାଇବାକୁ ଆସିଛି।

ରିପୋର୍ଟ! କି ରିପୋର୍ଟ ଲେଖାଇବାକୁ ଆସିଛୁ ?

ମୋ ଝିଅକୁ ସେମାନେ ତାଂକ ଦଳରେ ଜବରଦସ୍ତ ମିଶାଇଦେଲେ।

ବେହିପୋ, ସିଧାସିଧା କହ କିଏ ଓ କାହିଁକି, କେଉଁ ଦଳରେ ତୋ ଝିଅକୁ ମିଶାଇଲେ ?

ମୁଁ କ'ଣ ସେମାନଂକ ନାଆଁ ଜାଣିଛି ନା କାହିଁକି ମିଶାଇଲେ ଜାଣିଛି।

ନାଁ ଜାଣିନୁ ନା କାରଣ ଜାଣିନୁ, ତେବେ କେଉଁ ଦଳରେ ମିଶାଇଲେ ବୋଲି ଜାଣିଛୁ ?

ସେହି ଲାଲ ପତାକା ଦଳରେ।

ମାନେ! ମାଓବାଦୀଙ୍କ ସହ ତୋ' ଝିଅ ମିଶିଗଲା ?

ହଁ - ହଁ, ସେମାନଂକ ସହ।

ବେହିପୋ' ତୁ ତ ଅସଲ ହାରାମୀ ଅଛୁରେ। ସେମାନେ କ'ଣ ଦିନକରେ ଆସି ତୋ' ଝିଅକୁ ହାତ କରି ନେଲେ ?

ନାଇଁ - ନାଇଁ, ଆମ ଗାଆଁକୁ ତାଂକର ଆନା ଯାନା ଥିଲା, ମଝିରେ-ମଝିରେ ମିଟିଂ ମିଟୁଙ୍ଗା ବି କରୁଥିଲେ। ସରକାରଂକ ସହ ଲଢ଼ାଇ କରିବାକୁ ଶିଖାଉଥିଲେ।

ଆଚ୍ଛା ସେତେବେଳେ ତ କାହିଁକି ଆସି ଖବର ଦେଲୁନି, ଏବେ ତୋ'ଝିଅ ସେମାନଂକ ସହ ମିଶିଗଲା ବୋଲି ଧାଇଁ ଆସିଛୁ ଖବର ଦେବା ପାଇଁ - ନୁହେଁ ?

ଖବର ଦେଲେ ମାରି ଦେବାକୁ ଧମକ ଦେଉଥିଲେ।

ତା'ହାଲେ ଏବେ କାହିଁକି ଆସିଲୁ ?

କିଛି ସମୟ ଚୁପ୍ ରହିଲା ସୁଦାନ୍।

ଚୁପ୍ କାହିଁକି ରହିଲୁ - କହୁନୁ ?

ଯୁଆନ୍ ଝିଅଟା - ସେ ଟୋକାମାନଂକ ଦଳରେ ମିଶି ରହିବ, ଆଜି ଭଲ ଅଛି ମନ୍ଦ ଅଛି, ସେଇଥି ପାଇଁ ଧାଇଁ ଆସିଲି।

ଓହୋ - ତୁ ବେହିପୋ ମନେ ମନେ ଭାବିଲୁ, ଏ ପୁଲିସ୍ ବାଲା ଗୁଡ଼ା ତୋ' ହଳିଆ ତ ତୁ ଡାକିଲାକ୍ଷଣି ଚାଲିଯିବେ ତୋ' ଝିଅକୁ ଖୋଜିବାକୁ ନୁହେଁ ? ଆରେ ସେ କନେଷ୍ଟବଳଟା କୁଆଡ଼େ ଗଲା ?

ପାଟିଶୁଣି କନେଷ୍ଟବଳଟିଏ ହାଜିର ହୋଇ ସଲାମ୍ ମାରିଲା। ଏ ଶଳା ବେହିପୋ'କୁ ହାଜତରେ ପୂରାଇ ଦେ।

କନେଷ୍ଟବଳଟି କିଛି ସମୟ ନଯୌ ତଯୌ ଅବସ୍ଥାରେ ରହିଲା। କ'ଣ ଶୁଭିଲା ନାହିଁକି - କହିଲି ପରା ୟାକୁ ହାଜତରେ ପୂରା ବୋଲି ?

କନେଷ୍ଟବଳଟି ଏଥର ଥାନାବାବୁଙ୍କ ପାଖକୁ ଲାଗିଆସି କିଛି କହିବ କହିବ ବୋଲି ହେଲା।

କ'ଣ କିଛି କହିବାର ଥିଲା ?

ସାର୍, ଏଠି ସାମ୍ବାଦିକମାନେ ମାତି କରି ରହିଛନ୍ତି, ସେ ଦିନ କୁମ୍ବିଂ ଅପରେସନ୍ ବେଳେ ଆମେ ମଟରସାଇକେଲରେ ଯାଉଥିବା ସେ ଯେଉଁ ଦୁଇଜଣଙ୍କୁ ମାଓବାଦୀ ସନ୍ଦେହରେ ଅଟକ ରଖି ଲ୍ୟାଣ୍ଡମାଇନ୍ ବିଛା ହୋଇଛି ନା ନାହିଁ ଜାଣିବାକୁ ସେମାନଂକୁ ଯେଉଁ ବାଲିଗଦା ଚାରିପଟରେ ବୁଲାଇ ନଥିଲେ - ସେବେ ଠାରୁ ତ ସେମାନେ ରାଗିକରି ଅଗ୍ନିଶର୍ମା। ଏବେ ଥାନା ସେମାନଙ୍କର ଖବରର ଟାର୍ଗେଟ। ଯଦି ରିପୋର୍ଟ ଲେଖେଇବାକୁ ଆସିଥିବା ଲୋକଟିକୁ ଆମେ ଥାନାରେ ହାଜତରେ ପୂରାଇ ଦେଲେ, ତେବେ ଘଟଣାଟା କୁଆଡ଼େ କ'ଣ ଯାଇପାରେ।

ହଇହୋ - ମୁଁ ଥାନାର ଇନ୍‌ଚାର୍ଜ ନା ତମେ ?

ଯେଉଁ ସାମ୍ବାଦିକ ହଇରାଣ ହେଲେ ବୋଲି ତମେ କହୁଛ - ସେମାନେ ଦେଖାଇଥିଲେ ତାଂକର ଆଇ-କାର୍ଡ ? ବିନା ଆଇ-କାର୍ଡରେ ସେମାନଂକୁ ସାମ୍ବାଦିକ ବୋଲି କେଉଁ ଭରସାରେ ଛଡ଼ା ଯାଇଥାଆନ୍ତା ? ଆଉ ଏବେ ୟା' କଥା - ତା' ରିପୋର୍ଟଟି ରଖିଦେଲେ ଆମେ କ'ଣ କରି ପାରିବା ? ମାଓବାଦୀଙ୍କ ସହ ଲଢ଼ିବା ପାଇଁ ଅଛି ଆମ ପାଖରେ ଫୋର୍ସ ନା ଅସ୍ତ୍ରଶସ୍ତ୍ର ? ଆରେ ତୁ ସିନା ଠେଙ୍ଗୁଆ ଅଛୁ, ତୋତେ ଏ ପର୍ଯ୍ୟନ୍ତ ଲାଗିନାହିଁ ସଂସାରର ମୋହ, ହେଲେ ମୋର ପା' ପିଲାଛୁଆ ଅଛନ୍ତି। ପୁଅ ପାଠ ପଢୁଛି, ଝିଅ ବାହାଘରର ମୁଣ୍ଡ ଉପରେ। ଭାବ ପ୍ରବଣ ହୋଇ ମୁଁ ମାଓବାଦୀଙ୍କ ସହ ଲଢ଼ିବାକୁ ଡେଇଁ ପଡ଼ିଲେ କିଏ ନେବ ସେମାନଂକ ଦାୟିତ୍ୱ ? ମୁଁ କ'ଣ ଏଠାକୁ ଖୁସିରେ ଆସିଛି ନା ଦି'ପଇସା କମାଇ ହେବା ମୋହରେ ? ଜବରଦସ୍ତି ଆସିଛି ଏଠିକୁ ଏ ଦରବୁଢ଼ା ବୟସରେ। ସେମାନଂକ ସହ ଲଢ଼ି ମୁଁ କ'ଣ କିଛି କରି ପକାଇବି ବୋଲି ଭରସା ରଖି ଏଠାକୁ ମୋତେ ପଠାଇଛନ୍ତି ? ଏଠାକୁ କେହି ଆସିବାକୁ ରାଜି ନୁହଁନ୍ତି, ମୋତେ ଓ ମୋ ଭଳି କିଛି ଲୋକଙ୍କୁ ପଠାହୋଇଛି ମୁଣ୍ଡଗଣତି କରିବାକୁ ମାଓ ଦମନ ପାଇଁ ନୁହେଁ। ମୁଁ ଦେଖିବି ନା ଭଲରେ ଭଲରେ କେମିତି ମୋ କାର୍ଯ୍ୟକାଳ ପୂରାଇ ଚାଲିଯିବାକୁ ନା ସେମାନଂକ ସହ ଖାଲି ହାତରେ ଲଢ଼ାଇର ମୋଡ ନେବାକୁ ? କ'ଣ ମିଳିବ ମୋତେ ? ଅଶୋକ ଚକ୍ର ନା ପରମବୀର ଚକ୍ର ? ହଉ ଯଦିବା ମିଳିଲା ମୋ ପିଲାଛୁଆ କ'ଣ ତାକୁ ଘଟିବେ ?

ମୁଁ କ'ଣ କହୁଥିଲି କି ସାର୍.....।

ତୁ ଗୋଟାଏ କ'ଣ କହିବୁ ? ମୁଁ ଯାହା କହୁଛି ସେଇଆ କର। ତାକୁ ହାଜତରେ ପୂରା - ମାଓବାଦୀକୁ ସଂରକ୍ଷଣ ଦେବା ଅପରାଧର ଦଫା ଲଗାଇ ତା'ନାଆଁରେ ଗୋଟେ କେଶ୍ ଠୁକ୍। ଏବେ ଝିଅ ମାଓବାଦୀ ଦଳରେ ମିଶିଗଲା ବୋଲି ଚାଲିଆସିଲା ଥାନାକୁ। ଆଗରୁ ତ ତା' ଘରକୁ ସେମାନେ ଆସୁଥିଲେ, ସେତେବେଳେ କାହିଁକି ପୋଲିସରେ ଖବର ଦେଉନଥିଲା ?

ଏବେ ଯଦି ତା'ରିପୋର୍ଟ ଲେଖାଇ କିଛି ନକଲ ତେବେ ଏ ସାମ୍ବାଦିକମାନେ ଲେଖିବେ ପୋଲିସ୍ ନିଷ୍କ୍ରୀୟ ତେଣୁ ୟାକୁ ହାଜତରେ ପୂରାଇ ସାମ୍ବାଦିକମାନଂକୁ ଖବର ଦିଅ ପୋଲିସ ଜଣେ ମାଓବାଦୀଙ୍କୁ ଗିରଫ କରିଛି ବୋଲି। ଯଦି ସେମାନଂକର ଦମ୍ ଅଛି ଯାଆନ୍ତୁ ତା' ଗାଆଁରେ ଅନୁସନ୍ଧାନ କରନ୍ତୁ। ତା'ଝିଅ ତ ମାଓବାଦୀଙ୍କ ସହ ମିଶିଛି। ଝିଅ ଯେତେବେଳେ ମାଓବାଦୀ, ବାପ ତ ନିଶ୍ଚୟ ମାଓବାଦୀ ବୋଲି ସେମାନେ ବିଶ୍ୱାସ କରିବେ ନା।

ମୁଁ ଏଥର ବୁଝିଗଲି ସାର୍ - ଆପଣ ଏତେ ଦୂରଦୃଷ୍ଟି ରଖି ଚିନ୍ତା କରୁଛନ୍ତି ବୋଲି ମୁଁ ଜାଣି ପାରୁନଥିଲି।

ମୁଣ୍ଡରୁ ଟୋପିଟା ଓହ୍ଲାଇ ଥାନାବାବୁ କହିଲେ - ମୋ ମୁଣ୍ଡକୁ ଦେଖୁଛୁ, ଏ ଯେଉଁ ବାଳ ଉପୁଡ଼ି ଚନ୍ଦା ହୋଇ ଯାଇଛି ତାହା କ'ଣ ଖରା ତରା ନା ଏ ଟୋପିଲଗାରୁ ଚନ୍ଦା ହୋଇଛି, କେବଳ ଅନୁଭବ ଓ ଅଭିଜ୍ଞତାର ଚନ୍ଦାପଣ ଇଏ।

ହାଜତ ଭିତରକୁ ପଶିଲା ସୁଦାନ୍ ମାଡିକା। ସେ ବୁଝି ପାରୁନଥିଲା ତା'ର ଅପରାଧ କ'ଣ ? ହାଜତ ଭିତରେ ପୂରାଇ ତାଲା ଦେଉଁ ଦେଉଁ କନେଷ୍ଟବଲଟି କହିଲା - ତୁ ଏଇନେ ଜଣେ ମାଓବାଦୀ, ତୋ'ର କାହା ସହ କଥାବାର୍ତ୍ତା କରିବା ବନ୍ଦ। ହୁଏତ ସାମ୍ବାଦିକ, ଫଟୋଗ୍ରାଫର, ନେତାମାନେ ବି ଆସି ପାରନ୍ତି ତୋତେ ଭେଟିବାକୁ କି ଦେଖିବାକୁ। ତୋତେ ସେମାନଂକୁ ଦେଖାହେବ, ହେଲେ ତୁ ସେମାନଂକ ଆଗରେ ପାଟି ଖୋଲି ପାରିବୁ ନାହିଁ। ପାଟି ଖୋଲିଲେ - ଏ ଯେଉଁ ପୋଲିସ୍ ବାଡି ଦେଖୁଛୁ ନା, ସେଥିରେ ତୋ' ହାଡ ସବୁ ଚୁନା ହୋଇଯିବ।

ସକାଳର ଆୟୂଷ ବଢୁ ବଢୁ ପହଂଚି ଗଲେ ଆସି ଦଳ ଦଳ ସାମ୍ବାଦିକ। ହାଜତ ଠାରୁ ନିରାପଦ ଦୂରତାରେ ସେମାନଂକୁ ରଖି ଦେଖାଇ ଦିଆଗଲା ସୁଦାନ ମାଡିକାକୁ। ଜଣେ ଟି.ଭି. ସାମ୍ବାଦିକ ଚାହିଁଲେ ବାଇଟ୍ ନେବାକୁ। ମୁହଁରେ କପଡ଼ା ଓ ହାତରେ ହ୍ୟାଣ୍ଡକପ ପକାଇ ଅଣାଗଲା ସୁଦାନକୁ ବାହାରକୁ। ନିଜ ମୁହଁକୁ ଟି.ଭି.ରେ ଦେଖିବା ଲୋଭରେ ଥାନାବାବୁ, ଏ.ଏସ୍.ଆଇ, ହାବିଲଦାର ଓ କନେଷ୍ଟବଳ ଜଣଙ୍କ ତାକୁ ଏମିତି ଘେରି ରହିଲେ ଯେପରି ଜଣେ ଭୟଙ୍କର ଆତଂକବାଦୀକୁ ସେମାନେ କଡ଼ା ସୁରକ୍ଷା ଭିତରେ ସାମ୍ବାଦିକଙ୍କ ଆଗରେ ଉପସ୍ଥାପିତ କରୁଛନ୍ତି।

ସମ୍ବାଦପତ୍ର, ରେଡିଓ ଓ ଟି.ଭି. ଇତ୍ୟାଦି ଗଣମାଧ୍ୟମରେ ଖବର ପ୍ରସାରିତ ହେଲା ବାରମ୍ବାର, ଟି.ଭି. ରିପୋର୍ଟରେ ଦେଖାଗଲା ଥାନାବାବୁଙ୍କର ସାକ୍ଷାତକାର ଏବଂ ପ୍ରଚାର କରାଗଲା ସେ କେମିତି ବହୁ ଶ୍ରମ ଓ ଜୀବନକୁ ବାଜି ଲଗାଇ ଏଭଳି ଏକ ମାଓବାଦୀକୁ କାବୁ କରିବାକୁ ସକ୍ଷମ ହୋଇଛନ୍ତି ବୋଲି। ଯେହେତୁ ସମସ୍ତ ସାମ୍ବାଦିକମାନଂକ ପାଇଁ ଉତ୍ତମ ଖାଦ୍ୟ ପେୟ ସହ ସାମ୍ବାଦିକ ସମ୍ମିଳନୀର ଆୟୋଜନ କରାଯାଇଥିଲା, ଥାନବାବୁଙ୍କର

ପ୍ରଶଂସାରେ ଶତମୁଖ ହୋଇ ପଡ଼ିଥିଲେ ସମସ୍ତ ସମ୍ବାଦ ପତ୍ର।

ଗଣ ମାଧ୍ୟମର ରିପୋର୍ଟ ଦେଖି ଏସ୍.ପି. ଜିଲ୍ଲାପାଳ, ଗୃହସଚୀବ ଏବଂ ଖୋଦ୍ ମୁଖ୍ୟମନ୍ତ୍ରୀ ମଧ୍ୟ ବଧାଇ ଜଣାଇଥିଲେ ଥାନାବାବୁଙ୍କୁ ତାଂକର ସାହସିକ ପଦକ୍ଷେପ ପାଇଁ। ମୁଖ୍ୟମନ୍ତ୍ରୀ ତ ତାଂକ ସାକ୍ଷାତକାରରେ କହିଲେ - ତାଂକର କର୍ତ୍ତବ୍ୟନିଷ୍ଠା ଓ ଦକ୍ଷତା ଉପରେ ଭରସାଥିଲା ବୋଲି ତ ତାଂକୁ ଆମେ ସେଭଳି ମାଓପ୍ରବଣ ଅଂଚଳରେ ପୋଷ୍ଟିଂ ଦେଇଥିଲୁ। ଆମର ତାଂକ ଉପରେ ଥିବା ବିଶ୍ୱାସକୁ ସେ ପୁନଃ ସଂସ୍ଥାପିତ କରିଛନ୍ତି। ସରକାରଙ୍କ ତରଫରୁ ତାଂକୁ ଉପଯୁକ୍ତ ସମ୍ମାନ ଓ ପୁରସ୍କାର ପ୍ରଦାନ କରାଯିବା ପାଇଁ ବ୍ୟବସ୍ଥା କରିବାକୁ ଗୃହସଚିବଙ୍କୁ ନିର୍ଦ୍ଦେଶ ଦିଆସରିଲାଣି।

କନେଷ୍ଟବଳଟି ଭେଳକା ହୋଇ ଯାଉଥିଲା ଏ ସବୁ ଦେଖି। ଥାନାବାବୁ ବସିଥିବା ସ୍ଥାନକୁ ଗଲା। ଟିକେ ଲାଗିକରି ପାଖରେ ଠିଆ ହେଲା। ଥାନାବାବୁ ନିଶକୁ ସାଉଁଳେଇ ମୁରୁକି ମୁରୁକି ହସୁଥିଲେ। ତାକୁ ପାଖକୁ ଲାଗିଆସୁଥିବାର ଦେଖି ପଚାରିଲେ - ପୁଣି କ'ଣ କିଛି କହିବୁ କି ?

ସାର୍ ତାକୁ ପୁଲିସ୍ ହାଜତରେ କେତେ ଦିନ ରଖିବା ? ଆଜି ତ ଜମା ଦ୍ୱିତୀୟ ଦିନ। କୋର୍ଟରେ ପ୍ରଡ୍ୟୁସ୍ ନକରି ଆମେ ତିନିଦିନ ଯାଏଁ ରଖି ପାରିବା। ମୁଁ ଖବରକାଗଜ ବାଲାଂକୁ କହି ଦେଇଛି ତା'ଠାରୁ ମାଓବାଦ ସଂପର୍କରେ ସବିଶେଷ ତଥ୍ୟ ହାସଲ ପାଇଁ ଆମେ ତିନି ଦିନ ପୋଲିସ୍ ରିମାଣ୍ଡରେ ରଖିଛୁ। ଦରକାର ପଡିଲେ ଏ ମିଆଦର ବୃଦ୍ଧି ପାଇଁ କୋର୍ଟରେ ଦରଖାସ୍ତ କରାଯାଇପାରେ। ଏହା କହି ସାରି ସେ ନିଜ ମୁଣ୍ଡରୁ ଟୋପି ଉତାରୁଥିଲେ। କନେଷ୍ଟବଳଟି କହିଲା ବୁଝିଗଲି - ବୁଝିଗଲି ସାର୍, ଏ ଚନ୍ଦାପଣ ଆପଣଂକ ଅଭିଜ୍ଞତାର।

ହଉ ଠିକ୍ ବୁଝୁଛ ଯେ - ଦାୟିତ୍ୱଟାକୁ ମଧ୍ୟ ଠିକ୍ କରି ବୁଝ। ତାକୁ କଡ଼ା ସୁରକ୍ଷା ଭିତରେ ରଖ ଜେଲକୁ ଯିବା ଯାଏ।

ସେଦିନ ରାତିରେ ଥାନାବାବୁ ଖାଇ ପିଇସାରି ଶୋଇବାକୁ ଯାଉଛନ୍ତି - କବାଟରେ ଠକ୍ ଠକ୍ ଶବ୍ଦ ହେଲା। ସାଧାରଣତଃ ଶୋଇବାକୁ ଯିବା ସମୟରେ କିଏ ଯଦି ଡିଷ୍ଟର୍ବ କଲା ତେବେ ସେ ମନେ ମନେ ରାଗି ଯାଆନ୍ତି। କବାଟ ନ ଖୋଲି ଭିତରୁ ଥାଇ କହିଲେ - କ'ଣ ହେଲା ?

ଏ ପଟୁ କିଛି ଉତ୍ତର ନଯାଇ ପୁଣି ଥରେ କବାଟ ଠକ୍ ଠକ୍ ହେଲା।

ବେହେରା - ବେହେରା ତ ? ଆରେ କିଛି ନକହି କବାଟ ଠକ୍ ଠକ୍ କରୁଛୁ କାହିଁକି ?

କବାଟ ଖୋଲିଲେ ବୁଝିପାରିବ। ଜଲଦି କବାଟ ଖୋଲ, ନୋହିଲେ କବାଟ ଭାଂଗି ପଶିବୁ।

ପୋଲିସ୍ ଘର ବାଡ଼େଇ ଧମକ ଦେଉଛି କବାଟ ଭାଂଗିକରି ପଶିବ ବୋଲି ମାନେ ଇଏ ଚୋର କି ଡକାୟତ ନୁହଁ। ଆରେ ମାଓବାଦୀମାନେ ଏ ଖବର ଶୁଣି ଚାଲି ଆସିଲେ କି ? ଏଇନେ କବାଟ ଖୋଲିଲେ ବି ମଲା, ନ ଖୋଲିଲେ ବି ମଲା ମଣିଷ। ମନରେ ସାହସ ବାନ୍ଧି ପରିସ୍ଥିତିକୁ ସାମ୍ନା କରିବାକୁ ସେ କବାଟ ଖୋଲିଲେ। ଏକାବେଳକେ ଚାରିଜଣ ବନ୍ଧୁକ ଉଠାଇ ପଶିଗଲେ ଘର ଭିତରକୁ। ଖୋଲି ପକାଇଲେ ମୁଖା।

ଆଚ୍ଛା ତମେ ତାହାଲେ ସେହି ଥାନାବାବୁ ଯିଏ ମାଓବାଦୀ ଜଣକୁ ଗିରଫ କରିଛ ନୁହେଁ? କ'ଣ ତା'ର ନାଆଁ?

ସୁଦାମ ମାଡିକା।

କେଉଁଠୁ ତାକୁ ଗିରଫ କଲ? କି ମାଓବାଦୀ କାର୍ଯ୍ୟକଳାପରେ ସେ ଲିପ୍ତ ଥିଲା? କ'ଣ ଏନକ୍ୟାଉଣ୍ଟରରେ ଗିରଫ କରିଛ ନା ସେ ଗୁଳି ଖାଇ ଘାଇଲା ହେଲା ପରେ ଗିରଫ କରିଛ ?

ନା ଏନକାଉଣ୍ଟର ନୁହେଁ କି ଗୁଳି ବାଜି ଘାଇଲା ହେବା ପରେ ନୁହେଁ।

ତେବେ ସେ କ'ଣ ତମ ଆହ୍ୱାନରେ ଆସି ଆତ୍ମସମର୍ପଣ କଲା ?

ଆତ୍ମ- ସମର୍ପଣ ବି ନୁହେଁ।

ତେବେ ?

ଥାନାବାବୁଙ୍କର ନିରବ ରହିବା ଦେଖି ଜଣେ ମାଓବାଦୀ କହିଲା- ତମେ ବାହାବା ନିଅ, ପ୍ରଶଂସା ପାଅ, ପ୍ରମୋଶନ ପାଅ, ଆମର ମନା ନାହିଁ ମାତ୍ର ଜଣେ ସାଧାରଣ ଲୋକକୁ ମାଓବାଦୀ ବୋଲି କହି ମାଓବାଦୀଙ୍କର ଅପମାନ କରନାହିଁ।

ସିଏ ସାଧାରଣ ଲୋକ ବୋଲି ଆପଣମାନେ କିପରି ଜାଣିଲେ ?

କିପରି ଜାଣିଲୁ ନା ? ଇଏ, ଇଏ ହେଉଛି ତାଂକର ଝିଅ, ଯିଏ ମାଓବାଦୀ ସଂଗଠନରେ ମିଶିଛି ବୋଲି ସେ ଆସିଥିଲା ଖବର ଦେବା ପାଇଁ। ଜଣେ ସାଧାରଣ ନାଗରୀକର ମାନବିକ ଅଧିକାରକୁ କ୍ଷୁର୍ଣ୍ଣ କରି ତମେ ବାହାବା ନେଉଛ- ତମକୁ ଟିକେ ଲଜ୍ଜା ଲାଗୁନାହିଁ। ଆମ ହାତରେ ସମୟ କମ୍, ଯାଅ ତୁରନ୍ତ ତାକୁ ହାଜତରୁ ଖଲାସ କର।

ଦେଖ, ମୁଁ ଜଣେ କର୍ତ୍ତବ୍ୟନିଷ୍ଠ ପୋଲିସ୍ ଅଫିସର, ହାଜତରୁ ଗୋଟେ ଆସାମୀକୁ କିପରି ବାହାର କରି ପାରିବି ?

ଆସାମୀ! କି ଆସାମୀ ସିଏ ? ଜଣେ ନିରୀହ ଲୋକକୁ ହାଜତରେ ଭର୍ତ୍ତିକରି କର୍ତ୍ତବ୍ୟ ନିଷ୍ଠାର ବାହାବା ନେଉଛ ? ତାକୁ ବାହାର କରିବ ନା ଆମେ ହାଜତ ଭାଂଗି ବାହାର କରି ନେବୁ।

ନା - ଆପଣ ମାନଂକର ହାଜତ ଭାଂଗିବା ଦରକାର ନାହିଁ।

ଆମେ ବି ସେ କଥା ଚାହୁଁଛୁ।

କିଂତୁ ଆପଣମାନଂକୁ ଗୋଟିଏ କଥା କରିବାକୁ ପଡିବ। କ'ଣ ?

ଆପଣମାନଂକୁ ବୋମା ମାଡ କରି ଥାନାର କିଛି ଅଂଶ ଉଡାଇ ଦେବାକୁ ପଡିବ।

ଏଥିରେ ଲାଭ କ'ଣ ହେବ ?

ଏଥିରେ ଆମେ ଉଭୟଙ୍କର ଲାଭ ହେବ।

କେମିତି ?

ଆମେ ପୋଲିସ୍ ବାଲା ପ୍ରଚାର କରିବୁ ଜଣେ ମାଓବାଦୀକୁ ମୁକୁଳାଇବା ପାଇଁ ସଶସ୍ତ୍ର ମାଓବାଦୀମାନେ ଆସି ବୋମା ମାଡ କରି ଥାନା ଉଡାଇ ଦେଲେ, ଯାହା ଫଳରେ ତାକୁ ନେଇ ଏ ଦୁଇଦିନ ମଧ୍ୟରେ ଯେତେ ପ୍ରଚାର ଓ ପ୍ରସାର ହୋଇଛି ତାହା ସତ୍ୟରେ ପରିଣତ ହେବ।

ଠିକ୍, ହେଲେ ଏଥିରେ ଆମର ଲାଭ କ'ଣ ହେବ ? ସରକାର ଓ ସାଧାରଣ ଲୋକଂକ ପାଖକୁ ବାର୍ତ୍ତାଟିଏ ଯିବ ଯେ ମାଓବାଦୀମାନେ ଖୁବ୍ ଶକ୍ତିଶାଳୀ ହୋଇ ସାରିଲେଣି, ଯାହା ଫଳରେ ସାଧାରଣ ଲୋକେ ଆପଣଂକ ସଂଗଠନ ପ୍ରତି ଭୟରେ ଆକର୍ଷିତ ହେବେ ଏବଂ ସମୟକ୍ରମେ ସରକାର ଆପଣମାନଂକ ସଂଗଠନକୁ ବାର୍ତ୍ତା ପାଇଁ ଆମନ୍ତ୍ରଣ କରି ପାରନ୍ତି।

ପ୍ରସ୍ତାବ ମନ୍ଦ ନୁହେଁ। ତେବେ ତାହା ହିଁ ହେଉ। ହଁ - ଆଉ ଗୋଟିଏ କଥା, ରାତି ଡ୍ୟୁଟିରେଥିବା କନେଷ୍ଟବଲଟିକୁ ବନ୍ଧୁକ ଦେଖାଇ ଘଉଡାଇ ଦେବେ ବମିଂ କରିବା ପୂର୍ବରୁ ଯୁବକ ଅଛି ତ, ଡ୍ୟୁଟି ମୋହରେ କାଳେ ପ୍ରତିରୋଧ କରିପାରେ। ଦେଖିବେ ତା'ର ଯେମିତି କିଛି କ୍ଷତି ନ ହୁଏ।

ଫୁଟିଲା ବମ୍, ଉଡିଲା ଥାନାର ମାଲଖାନା। କମ୍ବଳ ଘୋଡ଼େଇ ହୋଇ ଘୁଂଘୁଡି ମାରୁଥିବା କନେଷ୍ଟବଲଟି ନିଦ ବାଉଳାରେ ହାଉଳି ଖାଇ ଧାଇଁଲା ବାହାରକୁ। ଭୟରେ ଭୁଲିଗଲା ପାଖରେ ରଖିଥିବା ବନ୍ଧୁକଟିକୁ ଆଣିବାକୁ। ଦୂରରେ ଥାଇ ଅନ୍ଧାରରେ ଲୁଚିକରି ଦେଖିଲା ସେମାନେ ଖୋଲିଲେ ଥାନାର ହାଜତ, ବାହାର କଲେ ସୁଦାନ ମାଡିକାକୁ। ହାଜତରୁ ମୁକୁଳି ଆସି ଜଣଙ୍କୁ କୁଣ୍ଢାଇ ଧରି କାନ୍ଦିଲା ସୁଦାନ୍। ଅନୁନୟ କରି କହୁଥିଲା - ଫେରିଚାଲ ଘରକୁ। ତୋ' ମାଆ ସେଠି କାନ୍ଦି କାନ୍ଦି ଅସ୍ଥିର ହେଉଛି। କ'ଣ ମିଳିବ ଆମକୁ ଏ ସଂଗ୍ରାମରୁ। ଆମ ସୁଖ ସୁବିଧା କଥା କେହି ନ ବୁଝିଲେ ନାହିଁ ଆମେ ପାଇଁ ତ ଜଂଗଲ ଅଛି। ଆମ ପେଟ ପାଇଁ ତ ଜଂଗଲ କେବେ ବାଟ ଓଗାଳି ଠିଆ ହୋଇନି। ତୁ ଝିଅ ପିଲାଟା, ସଂସାର କରିବୁ ଚାଲ, ସଂଘର୍ଷରେ ତୋ'ର କି କାମ ?

ବାପା ତମେ ଗାଡିରେ ବସ। ରାତି ପାହିବା ଆଗରୁ ତମକୁ ଗାଆଁରେ ଛାଡ଼ି ଦେଇ ଆମେ ଚାଲିଯିବୁ ଆମ ଶିବିରକୁ। ତମେ ଜମା ଭୟ କରନା, ଏ ବାହାର ଦୁନିଆଁ ଠାରୁ ସେ ଜଂଗଲର ଦୁନିଆଁଟା ବେଶ୍ ଭଲ ଓ ନିରାପଦ। ତମ ଝିଅର ଜମା କିଛି ହେବନି।

ଗାଡ଼ି ଚାଲିଗଲା ଧୂଆଁ ଉଡାଇ। ପ୍ରକୃତିସ୍ଥ ହେଲା କନେଷ୍ଟବଳଟି। ଧାଇଁଲା ଥାନା ବାବୁଙ୍କ ଘରକୁ। ଜୋରରେ କବାଟ ବାଡ଼େଇ ଡାକିଲା - ସାର୍, ସାର ଉଠନ୍ତୁ, ସେମାନେ ତାକୁ ନେଇଗଲେ।

କଂଚ୍ଚା ନିଦରୁ ଉଠିବାର ଅଭିନୟ କରି ଥାନାବାବୁ କହିଲେ - କାହିଁକିରେ ରାତିଟାରେ ଏମିତି ପାଟି କରୁଛୁ ?

ସେମାନେ ଆମ ଥାନାକୁ ଉଡାଇ ଦେଇ ତାକୁ ନେଇଗଲେ ସାର୍।

କାହାକୁ ?

ସୁଦାନ ମାଡିକାକୁ - ସେ ସତ ସତିକା ମାଓବାଦୀଟିଏ ସାର୍, ମାଓବାଦୀଙ୍କ ସହ ମିଶି ଚାଲିଗଲା।

ତୁ କ'ଣ କରୁଥିଲୁ ?

ମୁଁ ଏକା ସେମାନଂକୁ କେମିତି ସାମ୍ନା କରି ପାରିଥାଆନ୍ତି ସାର୍।

ଢ଼ାଏଁ କିନା ଚ୍ଚପୁଡାଟିଏ ବସାଇଲେ ଥାନା ବାବୁ।

ସାର୍ - ଇଏ କ'ଣ କରୁଛନ୍ତି ?

ଆଉ ଅପେକ୍ଷା ନ କରି ତୁ ମଧ ମୋତେ ମାର୍, ପାରୁଛୁ ଯଦି ମୋତେ କିଛି ଇନଜ୍ୟୁର କରିପକା, ମୋ ବାହୁକୁ ମାର ଗୁଳିଟିଏ।

କାହିଁକି ସାର୍ ?

କାଲି ସକାଳକୁ ଚାକିରି ବଂଚିଲେ ଏ ପ୍ରଶ୍ନ ତୋ'ର ପଚାରିବା ଆବଶ୍ୟକ ପଡିବ ନାହିଁ। ଆରେ ଆମେ ଜୀବନକୁ ପାଣି ଛଡ଼େଇ ସେମାନଂକ ସହ ସଂଗ୍ରାମ କଲୁ, କିଂତୁ ସେମାନେ ସଂଖ୍ୟାଧିକ ତଥା ଆଧୁନିକ ଅସ୍ତ୍ର ଶସ୍ତ୍ରରେ ଆସି ଥିବାରୁ ପାରିଲୁ ନାହିଁ। ସେମାନେ ହାଜତରୁ ମୁକୁଳାଇ ନେଲେ ଆସାମୀକୁ।

ମାଡ ମରାମରି, ଗୁଳି ଚଳା ଚଳି ହୋଇ ଉଭୟେ ଥକି ପଡିଲା ପରେ ଥାନାବାବୁ ପଚାରିଲେ - ଗଲାବେଳେ ସେମାନେ କ'ଣ କଥା ହେଉଥିଲେ ?

ସାର୍ ସେ ମାଡିକାର ଝିଅ ସେମାନଂକ ସହ ଥିଲା। ବାପା ଝିଅ କୁଣ୍ଢା କୁଣ୍ଢି ହୋଇ ବହେ କାନ୍ଦିଲେ। ବାପ ବୁଝାଉଥିଲା ଝିଅକୁ ଫେରିଯିବା ପାଇଁ। ମାତ୍ର ଝିଅ ଜମା ରାଜି ନହୋଇ

କହିଲା - ବାପା ଏ ବାହାରର ଦୁନିଆଁ ଅପେକ୍ଷା ସେ ମାଓବାଦର ଦୁନିଆଁ ବେଶ୍ ଭଲ ଓ ନିରାପଦ।

ଏବେ ତୋ'ର ବିଶ୍ୱାସ ହେଲା କି ନାହିଁ ସେ ମାଓବାଦୀ ବୋଲି ?

ଏବେ ଆଉ ବିଶ୍ୱାସ ନକରିବାର ଘରା ଅଛି।

ହଉ କାଲି ରାତି ପାହୁ। ଏବେ ଆମ ସମସ୍ତଙ୍କର ପ୍ରମୋଶନ ସହ ବଦଳି ସୁନିଶ୍ଚିତ। ଖାଲି ସକାଳ ଯାଏଁ ଘାଆଟାକୁ ସାଇତି ରଖ୍। ପାରୁଛୁ ଯଦି କ୍ଷତକୁ ଆହୁରି ବଢ଼ା, ଯେତେ ବଡ଼ ହେବ, କ୍ଷତ ସେତେ ବଢ଼ିବ ଖ୍ୟାତି। ଖାଲି ପୋଲିସ୍ ଚାକିରିରେ ଭର୍ତ୍ତି ହୋଇ ଓ୍ୱର୍ଦ୍ଦିଟାକୁ ଗଳାଇ ଦେଲେ ହେବନି, ସେ ଓ୍ୱର୍ଦ୍ଦିର ଭେଦଟାକୁ ବୁଝିବାକୁ ପଡିବ ନା।

* * *

## ॥ ଅଙ୍କବ ॥

ଘର ଛାଡ଼ି ପ୍ରଥମ ଥର ପାଇଁ ମୁଁ ଯାଉଥିଲି ବାହାରେ ରହିବା ପାଇଁ। ବାପାଂକର ଶାସନ ଓ ବୋଉର ଆକଟରୁ ସଂପୂର୍ଣ୍ଣ ମୁକ୍ତ ହୋଇ ରହିବାର ସପ୍ନରେ ମୁଁ ଥିଲି ଯେତିକି ବିଭୋର, ମୋର ଏକା ହୋଇ ରହିବା କଥା ଚିନ୍ତାକରି ବୋଉ ଥିଲା ସେତିକି ଆତୁର । ବୋଉର ଆତୁର ପଣକୁ ଥଙ୍ଗା କରି ବାପା କହନ୍ତି - ପୁଅ ପିଲାଟା ପାଇଁ ତ ଏତେ ଚିନ୍ତା କରୁଛ, ଝିଅ ହୋଇଥିଲେ କ'ଣ କରନ୍ତ ?

ମୁଁ ସେ ପୁଅ ଝିଅ କଥା ନେଇ ଚିନ୍ତା କରୁନି ମ, ପିଲାଟା ମୋର ଆଜିଯାଏ କେବେ ଏକା କେଉଁଠି ରହିନି, ସେଥିପାଇଁ ଚିନ୍ତା କରୁଛି, କହିଲା ବୋଉ।

ଏକା ! କ'ଣ ସାରା ହଷ୍ଟେଲଟାରେ ତମ ପୁଅ ଏକା ରହିବ ? ଆରେ ଗୋଟିଏ ହଷ୍ଟେଲରେ ପରା ଶହ ଶହ ପିଲା ରହୁଛନ୍ତି, ତମ ପୁଅ ଏକା ହେବ କେମିତି ? ଗୋଟିଏ ଗୋଟିଏ ରୁମ୍‌ରେ ପରା ପାଞ୍ଚ ଛଅ ପିଲା।

ହେଲା ଯେ, ସେଠି କ'ଣ ତା'ର ବାପା ମାଆ ଥିବେ ଯେ ସେ ଖାଇଲା କି ନଖାଇଲା ଓ ତାର ଭଲମନ୍ଦ ବୁଝିବେ ?

ହଉ ତମ ମନରେ ଯଦି ଏତେ କଥା ଅଛି, ତେବେ ତାକୁ ପଢ଼ିବାକୁ ନଛାଡ଼ି କାନିରେ ବାନ୍ଧି ରଖ, କିଏ ମନା କରୁଛି ?

ମୁଁ ପାଠ ପଢ଼ି ବଡ଼ ମଣିଷ ହୁଏ, ଏଇ ସପ୍ନରେ ବିଭୋର ଥିବା ବୋଉ ସଂଗେ ସଂଗେ କହିବ -ମଲା, ମୁଁ ଏ କଥା କେତେବେଳେ କହିଲି। ତମେ ତମ କାମ କର, ମୁଁ ମୋ କାମ କରୁଛି, ମୁଁ ମୋ ପୁଅ ପାଇଁ ବ୍ୟସ୍ତ ହେଲିକି କ'ଣ ହେଲି ତମର ଯାଏ ଆସେ କେତେ।

ବାପା ମୃଦୁ କ୍ରୋଧରେ କହିବେ, ହଉ ଆଉ ଦିନ କେଇଟା ତ, ତମେ କେତେ ସୁଆଂଗ କରୁଛ କରୁଥାଅ।

ମୋର କଲେଜରେ ଆଡମିଶନ୍ ଦିନ ଠାରୁ ହଷ୍ଟେଲକୁ ଯିବା ଯାଏ ବୋଉ ଭିତରେ ଲାଗି ରହିଥିଲା ବିଚିତ୍ର ବ୍ୟସ୍ତତା ଓ ବ୍ୟଗ୍ରତା। ଝିଅକୁ ଶାଶୁ ଘରକୁ ପଠାଇବା ପୂର୍ବରୁ ଯେମିତି

ବ୍ୟସ୍ତତା ଥାଏ ମାଆ ମାନଂକ ଭିତରେ, ଠିକ୍ ସେମିତି ବ୍ୟସ୍ତତା ଥିଲା ବୋଉ ଭିତରେ। ମୋର ହଷ୍ଟେଲ ଯିବାର ଆଠଦିନ ଆଗରୁ ସେ ସଜାଡୁ ଥିଲା ମୋର ନେବାକୁ ଥିବା ଜିନିଷ ପତ୍ର ଓ ସାଇତି ରଖୁଥିଲା ନାନାଦି ଜିନିଷ। ଚୁଡ଼ା ଭଜା, ଚୁଡ଼ା ଘଷା, ମୁଢ଼ି, ଛତୁଆ ଇତ୍ୟାଦି ସହ ବଡ଼ି, ଆଚ୍ଚର, ଆରିଷା ପିଠା, ଭଜା ବାଦାମ, ମଟର, ଗୋଟା ମୁଗ ଇତ୍ୟାଦିକୁ ଅଲଗା ଅଲଗା ପୁଡ଼ିଆ ବାନ୍ଧି ରଖୁଥିଲା। ମୁଁ ହଷ୍ଟେଲରେ ରହି ପାଠ ପଢ଼ିବା କଥା ଶୁଣିବା ଦିନଠାରୁ ବାପାଂକ ସମେତ ମୋର ସାନ ଭାଇଭଉଣୀମାନଙ୍କର କ୍ଷୀର ପିଆ ବନ୍ଦ କରି ମାରୁଥିଲା ଘିଅ।

ବୋଉର ଏସବୁ ପ୍ରସ୍ତୁତି ଦେଖି ବାପା ଥଟ୍ଟାରେ କହୁଥିବେ - ସେ ପାଠ ପଢ଼ିବାକୁ ଯାଉଛି ନା ଶାଶୁଘରକୁ ଯାଉଛି ?

ବୋଉ ବାପାଂକୁ କହିବ - ତମେ ଏଥିରେ କାହିଁକି ମୁଣ୍ଡ ଖେଳାଉଛ ?

ନାଇଁ ମୁଁ ମୁଣ୍ଡ ଖେଳାଉ ନାହିଁ ଯେ, ମୋ ବୋଉର ଗୋଟେ ଢ଼ଗ ତମର ଏ ବ୍ୟସ୍ତତା ଦେଖି ମନେ ପଡୁଛି।

କି ଢ଼ଗ ମ ?

ଢ଼ଗଟା ଥିଲା ଦାରୀ ଅର୍ଜି ଅର୍ଜି ମରୁଛି, ସୁନାରୀ ଫୁଙ୍କରେ ଉଡାଇ ଦେଉଛି।

ସେ କଥାଟା ଏଠି କ'ଣ ଲାଖିଲା କୁହ ତ ?

ଏଇ ତମେ ବହୁ ଯତ୍ନ ଓ କଷ୍ଟ କରି ଯାହା ସବୁ ଜିନିଷ ଦେବ, ସେ ସବୁ ଜିନିଷ ହଷ୍ଟେଲରେ ପହଂଚିବା କ୍ଷଣି ହରିଲୁଟ ହେବ।

କିଏ ହରିଲୁଟ କରିବ ମୋ ପିଲାର ଜିନିଷକୁ ?

କିଏ ଆଉ କରିବ, ହଷ୍ଟେଲରେ ଥିବା ପିଲାମାନେ। ଏଇୟା ତ ସବୁଠି ହୁଏ, ହଷ୍ଟେଲରେ ଥିବା ପିଲାଏ କାହାଘରୁ କୌଣସି ଜିନିଷ ପହଂଚିବା କ୍ଷଣି ତାକୁ ହରିଲୁଟ୍ କରି ଖାଆନ୍ତି।

ହଉ, ସେମାନେ ବି ତ ମୋ ପିଲାପରି, ଖାଇଲେ ଖାଆନ୍ତୁ।

ମୁଁ ଘର ଛାଡ଼ି ହଷ୍ଟେଲ ଆସିଲି। ହଷ୍ଟେଲରେ ମୋର ରହିବାର ବ୍ୟବସ୍ଥା କରାଇବାକୁ ସାଂଗରେ ଆସିଥିଲେ ବାପା। ହଷ୍ଟେଲରେ ଆନୁସଂଗିକ କାର୍ଯ୍ୟ ପରେ ମୋତେ ଦିଆଗଲା ସାତ ନମ୍ବର ରୁମ୍। ମୁଁ ଓ ବାପା ସବୁ ଜିନିଷ ଧରି ପହଂଚିଲୁ ସାତ ନମ୍ବର ରୁମ୍‌ରେ। ରୁମ୍‌ର କବାଟ କେବଳ ଆଉଜା ହୋଇଥିଲା। ବାପା ଧୀରେ ଧୀରେ କବାଟ ଠକ୍ ଠକ୍ କଲେ। ହ୍ୟାପ୍ ପ୍ୟାଣ୍ଟ ପିନ୍ଧିଥିବା ପିଲାଟିଏ ଆସି କବାଟ ଖୋଲିଲା।

ତାକୁ ଦେଖୁ ଦେଖୁ ବାପା କହିଲେ - ମୋ ପୁଅକୁ ସାତ ନମ୍ବର ରୁମ୍ ଆଲଟ୍ ହେଲା, ତମେ ବି ଏ ରୁମ୍‌ରେ ରହୁଛ ?

ସଂଗେ ସଂଗେ ନମସ୍କାର କରି ବାପାଂକୁ ରୁମ୍ ଭିତରକୁ ସ୍ୱାଗତ କଲା ପିଲାଟି । ବାପାଂକ ପଛେ ପଛେ ମୁଁ ପଶିଲି ରୁମ୍ ଭିତରକୁ । ରୁମ୍ ଭିତରେ ଚାରିଗୋଟି ବେଡ଼ ପଡିଥିଲା । ପଶୁ ପଶୁ ବାପା ପଚାରିଲେ କ'ଣ ସବୁ ପିଲା ଆସି ନାହାନ୍ତିକି ?

ଆଜିଠୁ ତ କଲେଜ ଆରମ୍ଭ ହେଲା, ଦିନେ ଦୁଇଦିନ ଭିତରେ ସବୁ ପିଲା ବୋଧେ ଆସିଯିବେ ।

ତମେ କେବେ ଠୁ ଆସିଲଣି ?

ମୁଁ କାଲି ରାତିରେ ଆସି ପହଂଚିଛି ।

ଘର କେଉଁଠି ?

କେନ୍ଦୁଝରରେ ।

ପଢୁଥିଲି କେଉଁ ସ୍କୁଲରେ ?

ମୁଁ ଆଶ୍ରମ ସ୍କୁଲରେ ପଢୁଥିଲି ।

ନାଆଁ କ'ଣ ?

ଶ୍ରୀଧର ଯେନା ।

ନାଆଁଟା ଶୁଣିବା ପରେ ବାପାଂକ ମନଟା ଟିକିଏ ଆମ୍ବିଳା ହେଲା ପରି ଲାଗିଲା ।

ବାପା କ'ଣ କରନ୍ତି ?

କୁଲିଭୂତି । ଆମର ଜମିଜମା କିଛି ନାହିଁ ତ ।

ତମର ପଢ଼ାଖର୍ଚ୍ଚ କେମିତି ... ?

ବାପାଂକ ପ୍ରଶ୍ନ ନସରୁଣୁ ଶ୍ରୀଧର କହିଲା - ମୁଁ ତ ଆଶ୍ରମ ସ୍କୁଲରେ ପଢୁଥିଲି, ସେଠି କିଛି ଖର୍ଚ୍ଚ ପଡୁ ନଥିଲା । ଏବେ ଜାତୀୟ ବୃତ୍ତି ମିଳିଯିବ । ସେଥିରେ ହୋଇଯିବ ।

ତମେ କେତେ ନମ୍ବର ରଖିଛ ?

ଛଅ ଶହ ସତାନବେ ଓ ଓଡ଼ିଶାରେ ଅନୁସୂଚିତ ବର୍ଗର ପିଲାମାନଂକ ମଧ୍ୟରେ ପ୍ରଥମ ଏବଂ ସାମଗ୍ରିକ ଭାବରେ ସପ୍ତମ ହୋଇଛି ।

ଶ୍ରୀଧର ମେଧାବୀ ଓ ମୋ ଠାରୁ ଯେ ଅଧିକ ଦକ୍ଷ ଓ ପାରଂଗମ ପାଠରେ, ଏହା ନେଇ ମୋ ମନରେ ସନ୍ଦେହ ନଥିଲା । ଖୁସିହେଲି ଯେ ଯାହା ହେଉ ଜଣେ ମେଧାବୀ ରୁମ୍‌ମେଟ ମିଳିଲା ବୋଲି । ମୁଁ ମନେ ମନେ ଖୁସି ହେଉଥିଲି ସତ ହେଲେ ବାପା ଆଦୌ ଖୁସି ହୋଇ ପାରୁନଥିଲେ ।

କିଛି ସମୟ ଚୁପ୍ ରହିବା ପରେ ବାପା କହିଲେ ତୁ ଥା, ମୁଁ ଟିକିଏ ଆସୁଛି । ସେ ଯିବା ପରେ ମୁଁ ମୋ ପାଇଁ ଉଦ୍ଦିଷ୍ଟ ଥାକରେ ମୋର ବହିପତ୍ର ସଜାଡିଲି । କିଛି ସମୟ ପରେ ବାପା

ଫେରିଲେ ସତ ହେଲେ ତାଂକ ମୁହଁରୁ ହତାଶା ଓ ବିଫଳତାର ଚିହ୍ନ ସ୍ପଷ୍ଟ ବାରି ହୋଇ ପଡୁଥିଲା । ମୋତେ ବାହାରକୁ ଡାକି ନେଇ କହିଲେ - ତୁ ଦୁଇଚାରିଦିନ ଚଳାଇ ନେ, ହଷ୍ଟେଲ ନ ହେଲା ନାହିଁ ମୁଁ ତୋ'ପାଇଁ ଗୋଟେ ମେସ୍ ବନ୍ଦୋବସ୍ତ କରିଦେବି ।

ମେସ୍ ! ମେସ୍ କାହିଁକି ?

ତୋ' ରୁମ୍‌ମେଟ୍‌ଟି ଗୋଟେ ହରିଜନ ପିଲା, ତୁ ତା' ସହ ଏକାଠି ରହୁଛୁ ଜାଣିଲେ ତୋ' ମାଆ ମୁଣ୍ଡ ପିଟିଦେବ । ଗାଆଁରେ ଆମର ଜଜମାନ ସବୁ ଫିଟିଯିବେ ।

ଶ୍ରୀଧର ଜଣେ ମେଧାବୀ ଛାତ୍ର ଏବଂ ଏହି ଅଳ୍ପ ସମୟ ଭିତରେ ମୁଁ ଯାହା ଜାଣୁଛି ସେ ଖୁବ୍ ଉତ୍ତମ ସ୍ୱଭାବର ।

ହଁ ଯେ, ହେଲେ ସେ ଅଛୁଆଁ ।

ଏଇଟା ଆମରି ତିଆରି ନୀୟମ ।

ନା, ଆମ ତିଆରି ନୁହେଁ, ଆମ ପୂର୍ବ ପୁରୁଷ ତିଆରି ।

ଏହା କ'ଣ ଠିକ୍ ?

ଠିକ୍ ବା ଭୁଲ ନିର୍ଣ୍ଣୟ କରିବାକୁ ଆମେ କିଏ ।

ହେଲେ ଏ ନୀୟମ ଭାଂଗିଯିବା ଉଚିତ୍ ।

ମୋ ସ୍ୱରରେ ଦୃଢ଼ତା ଦେଖି ବାପା ଆଉ ଅଧିକ କିଛି ନକହି ଚୁପ୍ ରହିଲେ । ମୋତେ ହଷ୍ଟେଲରେ ଛାଡି ଘରକୁ ଫେରିବା ଯାଏ ସେ ଆଉ ବିଶେଷ କିଛି କଥାବାର୍ତ୍ତା କରିନଥିଲେ । କେବଳ ମନ ଦେଇ ପଢ଼ାପଢ଼ି କରିବୁ, ନିଜର ଯତ୍ନ ନେବୁ ପରି କିଛି ଔପଚାରୀକ ଉପଦେଶ ଦେଇ ସେ ଘରକୁ ଚାଲିଗଲେ ।

ବାପା ଚାଲିଯିବା ପରେ ମୁଁ ଫେରି ଆସିଲି ମୋର ବାଂଛିତ ସ୍ୱାଧୀନତାର ବଳୟ ଭିତରକୁ । ସଜାଡିଲି ମୋର ବହିପତ୍ର, ପ୍ୟାଣ୍ଟସାର୍ଟ ଓ ବୋଉ ଦେଇଥିବା ଖାଦ୍ୟ ଜିନିଷ । ମୋର ଜିନିଷ ପତ୍ର ସଜାଡିବାର ବେଢ଼ଙ୍ଗ ପଣ ଦେଖି ଶ୍ରୀଧର କହିଲା - ତମର ଏଇଟା ବୋଧ ହୁଏ ହଷ୍ଟେଲରେ ରହିବାର ପ୍ରଥମ ।

ହଁ - କ'ଣ ହେଲା କି ?

ନାଇଁ କିଛି ନାହିଁ ଯେ, ରୁହ ମୁଁ ତୁମକୁ ସାହାଯ୍ୟ କରିଦେଉଛି ଜିନିଷପତ୍ର ସଜାଡି ରଖିବାରେ ।

ଖୁବ୍ ଅଳ୍ପ ସମୟ ମଧ୍ୟରେ ଶ୍ରୀଧର ମୋର ଜିନିଷପତ୍ର ସବୁକୁ ଏମିତି ଭାବେ ସଜାଡି ଦେଲା ଯେ ସେ ସବୁ ଲାଗିଲେ ମୋତେ ଶୃଙ୍ଖଳିତ ସୈନିକମାନଂକପରି । ମୁଁ ତାକୁ ଧନ୍ୟବାଦ

ଦେଇ କହିଲି - ମୁଁ ତମର ଜିନିଷ ପତ୍ର ସଜାଡି ରଖିବାର କାଇଦାଟିକୁ ନିରୀକ୍ଷଣ କରି ସଜାଡି ରଖିବାକୁ ଚେଷ୍ଟା କରୁଥିଲି ସତ, ହେଲେ ତମ ପରି ସଜାଇ ରଖି ପାରିନଥାନ୍ତି।

ଏହା ତମର ପ୍ରଥମ ହଷ୍ଟେଲ ରହଣୀ ତ, ସେଥିପାଇଁ। ଏଥିରେ ମୋର ବିଶେଷ କିଛି ଦକ୍ଷତା ନାହିଁ, ବାଧବାଧକତାରେ ଆବାଲ୍ୟରୁ ହଷ୍ଟେଲ ଜୀବନରେ ଆଦି ହୋଇ ଯାଇଥିବାରୁ ଏ ସବୁ ଶିଖିବାକୁ ଆମେ ଆପାତତଃ ବାଧ ହୋଇ ଯାଇଛୁ।

ତମେ କେତେ ବର୍ଷ ହେଲାଣି ହଷ୍ଟେଲରେ ରହିଥିଲ ?

ପ୍ରଥମ ଶ୍ରେଣୀରୁ ତ ଆଜି ଯାଏ।

ତମ ଗାଆଁରେ କ'ଣ ହାଇସ୍କୁଲ ନଥିଲା କି ?

ଆମ ଗାଆଁରେ ଯଦିଓ ହାଇସ୍କୁଲ ନାହିଁ, ପଡୋଶୀ ଗାଆଁରେ ଅଛି। ହେଲେ ଘରେ ରହି ପଢ଼ିବାକୁ ଯେଉଁ ସମ୍ବଳ ଓ ସୁଯୋଗ ଦରକାର ମୋ ବାପାଂକର ନଥିଲା। ସେଥିପାଇଁ ପ୍ରଥମରୁ ହିଁ ମୁଁ ଆଶ୍ରମ ସ୍କୁଲରେ ରହି ପାଠ ପଢ଼ି ଆସିଛି।

ମୁଁ ଉଠିଗଲି ମୋ ବେଡ୍ ଉପରୁ ଶ୍ରୀଧରର ଟେବୁଲ ପାଖକୁ ସେ କ'ଣ ସବୁ ପଢ଼ାପଢ଼ି କରୁଛି ଦେଖିବି ବୋଲି। ସେ କହିଲା ମୁଁ ଅନ୍ୟ ଛାତ୍ରଙ୍କ ପରି କଲେଜ ଆସିବ ପୂର୍ବରୁ କଲେଜରେ ଚଳୁଥିବା ବହି ପଢ଼ାପଢ଼ି କରିନି ହେଲେ ଏ ଛୁଟିରେ କୋର୍ସ ବାହାରର ବହୁତ ବହି ପଢ଼ାପଢ଼ି କରୁଥିଲି। ମୋର ସାର୍ ସବୁବେଳେ କହୁଥିଲେ - ଜ୍ଞାନ ହେଉଛି ଏକ ବ୍ୟାପକ ସମୁଦ୍ର ସଦୃଶ, ଯେତେ ପାରୁଛ ସେତେ ଅଧ୍ୟୟନ କରି ନିଜର ଜ୍ଞାନର ପରିସର ଓ ଗଭୀରତାକୁ ବଢ଼ାଅ। ପାଠ୍ୟକ୍ରମରେ କେତେ ବା ବହି, ଯଦି ଜଣେ ଛାତ୍ର ଚାହେଁ ତେବେ ଦୁଇମାସ ସମୟ ମଧ୍ୟରେ ସେ ସବୁକୁ ଆୟତ୍ତ କରିପାରିବ।

ମୁଁ ଶ୍ରୀଧର ଟେବୁଲ ଉପରେ ତାହାର ବହିସବୁ ଦେଖୁ ଦେଖୁ ଦେଖିଲି ଠିକ୍ ତା ଟେବୁଲ୍ ସାମ୍ନା କାନ୍ଥରେ ଗୋଟିଏ କାଗଜରେ ଶ୍ଳୋକଟିଏ ଲେଖି ମରାଯାଇଛି - "ଦୈବବଶାତ୍ କୂଳ ଜନ୍ମଂ, ମଦାୟତଚ ପୌରୁଷଂ" ମୁଁ ପଚାରିଲି ଏହାର ଅର୍ଥ କ'ଣ ?

ଶ୍ରୀଧର ମୋତେ ବୁଝାଇଲା - ଉଚ୍ଚ ବା ନୀଚ କୂଳରେ ଜନ୍ମ ହେବା ଦୈବର ଅଧୀନ, ହେଲେ ନିଜର ବ୍ୟକ୍ତିତ୍ୱ ତଥା ପୁରୁଷାକାର ବିକାଶ କରିବା ନିଜର ଆୟତ୍ତ। ମୋତେ ଆଉ ଟିକେ ପ୍ରାଂଜଳ ଭାବରେ ବୁଝାଇବାକୁ ଯାଇ ସେ କହିଲା - ଆମ ସମ୍ବିଧାନର ଜନକ ବାବା ସାହେବ ଆମ୍ବେଦକର ଜନ୍ମ ହୋଇଥିଲେ ଏକ ମୋଚି ପରିବାରରେ କିଂତୁ ନିଜର ପୁରୁଷାକାର ଏବଂ ବ୍ୟକ୍ତିତ୍ୱ ବଳରେ ସେ ସମଗ୍ର ଦେଶର ନମସ୍ୟ ହୋଇ ରହିଛନ୍ତି।

ମୁଁ ଶ୍ରୀଧରର କଥାକୁ ମନ୍ତ୍ରମୁଗ୍ଧ ହୋଇ ଶୁଣୁଥିଲି କେବଳ। ଦିନ ଯାଇ ସନ୍ଧ୍ୟା ହେଲା, ଶ୍ରୀଧର ବାଥ୍ରୁମ ଯାଇ ଗୋଡ ହାତ ଧୁଆ - ଧୋଇ କରି ଆସି ତା ଟେବୁଲ ସାମ୍ନାରେ

ଲଗାଇଥିବା ସରସ୍ୱତୀ ଫଟୋ ସାମ୍ନାରେ ଧୂପଟିଏ ଜାଳି ପ୍ରାର୍ଥନା କଲା। ପ୍ରାର୍ଥନା ପରେ କିଛି ସମୟ ଧ୍ୟାନସ୍ଥ ହେଲା। ମୁଁ କେବଳ ଲକ୍ଷ୍ୟ କରୁଥିଲି ତା'ର କାର୍ଯ୍ୟ କଳାପକୁ।

ପ୍ରାର୍ଥନାରୁ ଉଠିବା ପରେ ସେ ପଢ଼ା ଟେବୁଲ ପାଖରେ ବସିଲା ପଢ଼ିବା ପାଇଁ। ପାଠ ପଢ଼ାରେ ଏମିତି ନିମଗ୍ନ ହୋଇଗଲା ଯେ ତା' ବହିଁପାର୍ଶ୍ୱ ପୃଥିବୀରେ କ'ଣ ଅଛି ଜାଣି ପାରୁନଥିଲା।

ଠିକ୍ ନଅଟା ବେଳେ ସେ ଉଠିଲା ତା'ର ଚେୟାର ଛାଡ଼ି। ମୋତେ ପଚାରିଲା - ଖାଇବାକୁ ଯିବନି କି ?

ହଁ - କ'ଣ ଏତିକି ବେଳୁ ?

ଏତିକି ବେଳୁ କ'ଣ, ନଅଟା ବାଜିଲାଣି ପରା, ଏଇଟା ହଷ୍ଟେଲ, ଖାଇବା ସମୟ ପରା ନଅରୁ ଦଶ ଯାଏ।

ଅଗତ୍ୟା ମୁଁ ଉଠିଲି ଶ୍ରୀଧର ସହ ଖାଇବାକୁ ଯିବା ପାଇଁ।

ଆମେ ଉଭୟ ଖାଇ କରି ଆସିବା ପରେ ଶ୍ରୀଧର ଦଶ ମିନିଟ୍ ଯାଏଁ ବଜ୍ରାସନରେ ବସିଲା ବିଛଣା ଉପରେ। ତା' ପରେ ଉଠିଆସି ତା' ପଢ଼ାଟେବୁଲ ପାଖରେ ବସି କ'ଣ ଗୋଟାଏ ପତ୍ରିକା ପଢ଼ିଲା। ଠିକ୍ ଏଗାରଟା ବେଳକୁ ତା' ଟେବୁଲ୍ ଲ୍ୟାମ୍ପଟି ଲିଭାଇ ଦେଇ କହିଲା - ମୋର ଆଜିର କାର୍ଯ୍ୟ ଶେଷ। ମୁଁ ଏବେ ଶୋଇବି। ତମେ କେତେବେଳେ ଶୁଅ ?

ମୋର ସେମିତି କୌଣସି ନିର୍ଦ୍ଦିଷ୍ଟ ସମୟ ନାହିଁ।

ଉହୁଁ - ଯାହା ବି କର ଖାଇବା, ଶୋଇବା ଓ ପାଠ ପଢ଼ିବାର ଗୋଟିଏ ନିର୍ଦ୍ଦିଷ୍ଟ ସମୟ ରଖିବ। ଆମର ଏଇନେ ବିଦ୍ୟାର୍ଥୀ ଜୀବନ, ଏହା କୌଣସି ତପସ୍ୟାରୁ କମ୍ ନୁହେଁ, ଏଥିରେ ନିର୍ଦ୍ଦିଷ୍ଟ ସମୟ ନ ରଖିଲେ ଚଳିବ କେମିତି ?

ଉପଦେଶଟି ଦେଇ ସାରି ମୋତେ ଆଉ ଅପେକ୍ଷା ନକରି ସେ ତା'ର ମଶାରୀ ଟାଂଗି ଶୋଇପଡିଲା।

ନୂଆ ଜାଗା ଏବଂ ମୋର ହଷ୍ଟେଲରେ ରହିବାର ପ୍ରଥମ ଅନୁଭୂତି ହୋଇ ଥିବାରୁ ମୋ ଆଖିକୁ ନିଦ ଆସୁନଥାଏ। ତଥାପି ଶ୍ରୀଧର ଶୋଇଯିବା ପରେ ମୁଁ ଶୋଇବାର ଉପକ୍ରମ କଲି ଏବଂ ବହୁ ବିଳମ୍ବରେ ମୋ ଆଖିକୁ ନିଦ ଆସିଲା।

ହଷ୍ଟେଲ ଝରକା ଦେଇ ପଡୁଥିବା ଖରା ମୋ ମୁହଁରେ ପଡିବାରୁ ମୋ ନିଦ ଭାଂଗିଲା। ମୁଁ ଧଡ଼ ପଡ଼ ହୋଇ ଉଠି ପଡିଲି। ଦେଖିଲି ଶ୍ରୀଧର ପାଠପଢ଼ାରେ ସଂପୂର୍ଣ୍ଣ ନିମଗ୍ନ ପଚାରିଲି କେତେ ବେଳୁ ଉଠିଲଣି।

ମୁଁ ତ ପ୍ରତିଦିନ ରାତି ସାଢ଼େ ଚାରିଟାରୁ ଉଠେ।

ସାଢ଼େ ଚାରିଟାରୁ! ଉଠିକରି କ'ଣ କରୁଥିଲ ?

ମୁଁ ଉଠିବା କ୍ଷଣି ମୋ ନିତ୍ୟକର୍ମ ସାରିଦିଏ। ତା'ପରେ କିଛି ସମୟ ଯୋଗ କରେ। ସକାଳ ହେବାକ୍ଷଣି ପାଠ ପଢ଼ାରେ ବସେ।

ବାଃ - ତମେ ଏକ ଚମତକାର ଶୃଂଖଳିତ ଜୀବନ ବିତାଉଛ।

ହଁ - ଥରେ ଜୀବନ ଶୃଂଖଳାରେ ପଡିଗଲେ, ଶୃଂଖଳାଟା ଅଭ୍ୟାସରେ ପରିଣତ ହୋଇଯାଏ। ଏସବୁଥିରେ ମୋର ଆଶ୍ରମ ସ୍କୁଲର ଜୀବନର ପ୍ରଭାବ ରହିଛି।

ଆଛା ଆଜି ପ୍ରାତଃ କାଳରୁ ଯେଉଁ ଗାୟତ୍ରୀ ମନ୍ତ୍ର ମୋର ଅର୍ଦ୍ଧ ଚେତନ ଅବସ୍ଥାରେ କାନରେ ବାଜୁଥିଲା ତାହା କ'ଣ ତମେ ଗାଉଥିଲ ?

ହଁ - ଦିନର ଶୁଭାରମ୍ଭ ତ ମୁଁ ଗାୟତ୍ରୀ ମନ୍ତ୍ରରୁ କରିଥାଏ।

ଆଉ ଶ୍ରୀଧରକୁ କିଛି ନପଚାରି ମୁଁ ଉଠିଗଲି ମୋର ନିତ୍ୟକର୍ମ ସାରିବାକୁ। ଫେରିବା ପରେ ମୁଁ ଜଳଖିଆ ପ୍ରସ୍ତୁତ କଲି ଖାଇବାକୁ। ଶ୍ରୀଧର ପାଇଁ ଗୋଟିଏ ପାତ୍ରରେ ଜଳଖିଆ ଦେଇ କହିଲି - ନିଅ।

ସେ ତା' ପଢ଼ା ବହିରୁ ମୁହଁ ଉଠାଇ ଥରେ ମୋ ମୁହଁକୁ ଓ ଥରେ ଜଳଖିଆ ଆଡକୁ ଚାହିଁଲା। ତା'ପରେ ହାତ ଯୋଡି ଅତି ବିନୀତଭାବ ଦେଖାଇ କହିଲା - ତମର ସୌଜନ୍ୟ ପାଇଁ ଧନ୍ୟବାଦ। ହେଲେ ମୁଁ ଏହାକୁ ଗ୍ରହଣ କରି ପାରିବିନି।

କ'ଣ ପାଇଁ ?

କାରଣ ସେମିତି କିଛି ଗୁରୁତ୍ୱପୂର୍ଣ୍ଣ ନୁହେଁ, ହେଲେ ତମର ବନ୍ଧୁତ୍ୱକୁ ସମ୍ମାନ ଜଣାଇ ପ୍ରତିଦାନ ଦେବାକୁ ମୋର ସାମର୍ଥ୍ୟ ନାହିଁ କି ସୁଯୋଗ ନାହିଁ।

ଏହାର ମୋର ତମକୁ ଦାନ ନୁହେଁ ଯେ ମୁଁ ପ୍ରତିଦାନ ଆଶା କରିବି। ମୋ ମାଆ ଘରୁ ଆସିବା ବେଳେ ଏସବୁ ଜିନିଷ ଦେଇଥିଲେ ଏବଂ କହିଥିଲେ ସାଥୀ ମାନଂକ ସହ ମିଳିମିଶି ଖାଇବାକୁ। ତମେ ମୋର ସାଥୀ ନୁହଁକି ?

ମୁଁ ତ ତୁମର ସାଥୀ ନିଶ୍ଚୟ, ହେଲେ...।

ତମେ ଖାଅ ତ - ପରେ ଅନ୍ୟ କଥା।

ଶ୍ରୀଧର ସହ ମୋର ଦୁଇବର୍ଷ କଟିଲା ହଷ୍ଟେଲରେ। ତା'ର ଶୃଂଖଳିତ ନୀତି ଓ ନୀୟମ ସହ ଗଭୀର ମେଧାର ପ୍ରଭାବ ମୋ ଉପରେ ଯଥେଷ୍ଟ ପଡିଥିଲା। ଏକଥା କହିବାରେ ମୋର ସାମାନ୍ୟ ଦ୍ୱିଧା ନାହିଁ ଯେ ମୁଁ ଆଜି ଯେଉଁ ସ୍ଥାନରେ ପହଂଚିଛି, ଶ୍ରୀଧର ଭଳି ଜଣେ ବନ୍ଧୁ ଓ ମାର୍ଗଦର୍ଶକ ପାଇ ନଥିଲେ ହୁଏତ ପହଂଚି ପାରିନଥାନ୍ତି।

ଦୁଇବର୍ଷର ଆଇ.ଏସ୍.ସି. ପାଠ ପରେ ମୁଁ ପଢ଼ିଲି ଇଂଜିନିୟରିଂ ମାତ୍ର ମୋ ଠାରୁ ଯଥେଷ୍ଟ ଭଲ କରିବା ସହ ଭଲ ର୍ୟାଂକରେ ମେଡିକାଲ କିମ୍ବା ଇଂଜିନୟରିଂ ପାଇବାର ଦକ୍ଷତା ରଖୁଥିବା ଶ୍ରୀଧର ପଢ଼ିଲା, ବି.ଏସ୍.ସି. ଯାହାର ଏକମାତ୍ର କାରଣ ଥିଲା ତାରି ଆର୍ଥିକ ଅସଚ୍ଛଳତା।

ଯଦିଓ ଶ୍ରୀଧରର ସ୍ମୃତି ମୋ ହୃଦୟ ଭିତରେ ଗଭୀର ଭାବରେ ରହିଥିଲା କିଂତୁ ଆମେ ପରସ୍ପରଠାରୁ ବିଛିନ୍ନ ହେବା ପରଠାରୁ ପ୍ରାୟ ଅନ୍ୟ କୌଣସି ଯୋଗାଯୋଗ ନଥିଲା। ହଠାତ୍ ବହୁବର୍ଷ ପରେ ମୁଁ ଶ୍ରୀଧର ଠାରୁ ଟେଲିଫୋନ୍ କଲଟିଏ ପାଇ ଯେତିକି ବିସ୍ମିତ ହେଲି ତତୋଧିକ ଖୁସି ହେଲି। ତମେ କେଉଁଠି ଏବଂ ମୋ ନମ୍ବର କିପରି ପାଇଲ ପଚାରିବାରୁ ସେ କହିଲା, ଓଡ଼ିଶା ଆସିଥିଲି, ଗୋଟିଏ ପତ୍ରିକା ଖୋଲାଉ ଖୋଲାଉ ତମର ଲେଖା ଦେଖିଲି ଏବଂ ଲେଖା ତଳେ ତମର ମୋବାଇଲ ନମ୍ବର ଦେଖି ଫୋନ୍ କରୁଛି। ହଁ ମୁଁ ଏବେ ଆସିଷ୍ଟାଣ୍ଟ୍ କମିଶନର ଇନ୍‌କମ୍ ଟ୍ୟାକ୍ସ, କଲିକତାରେ।

ଏବେ ଓଡ଼ିଶାରେମାନେ କେଉଁଠି ?

ଏଇ ତମ ସହରରେ।

ତେବେ ଖୁବ୍ ଭଲ ହେଲା - ମୁଁ ତୁମକୁ କେଉଁଠି ଭେଟି ପାରିବି କୁହ।

ପାଖରେ ଅଛି ଯେତେବେଳେ, ନିଶ୍ଚୟ ତ ଭେଟ ହେବା।

ଆଜି ଡିନର ପୋଗ୍ରାମ ରହୁ ଆମ ଘରେ।

ନାଁ ଭାଇ, ତମେ ଏଠାରେ ରହୁଛ ଜାଣିଥିଲେ ମୁଁ ହୁଏତ ପ୍ରୋଗ୍ରାମ ଅନ୍ୟ ପ୍ରକାର କରିଥାଆନ୍ତି, ହେଲେ ଆଜି ସନ୍ଧ୍ୟାରେ ଫେରିଯିବା ପାଇଁ ଆମର ଟିକେଟ୍ କଟା ଯାଇଛି।

ତାହାଲେ ଏବେ ଆସିବାକୁ ପଡିବ, ତମେ କେଉଁଠି ଅଛ କୁହ ତ ମୁଁ ଯାଇଁ ପହଞ୍ଚୁଛି।

ଦେଖ, ଏବେ ନଅଟା ବାଜିଲାଣି, ଠିକ୍ ଦଶଟାରେ ମୋର ଗୋଟେ ମିଟିଂ ଅଛି। ମିଟିଂଟା ଅବଶ୍ୟ ବେଶି ସମୟ ଚାଲିବନି, ମୁଁ ବାରଟା ଗୋଟାଏ ପରେ ଫ୍ରି ହୋଇଯିବି।

ତେବେ ଠିକ୍ ଅଛି, ଆମ ଘରେ ଲଂଚ।

ହଉ- ହେଲେ ତମେ ଆସିବା ଦରକାର ନାହିଁ, ମୁଁ ତମ ଠିକଣାରେ ପହଂଚି ଯିବି।

ଲଂଚରେ ଶ୍ରୀଧର ଆସିବ ଏଥିପାଇଁ ମୋ ପତ୍ନୀଙ୍କୁ ବରାଦ କରି ନାନା ପ୍ରକାରର ଖାଦ୍ୟ ପ୍ରସ୍ତୁତ କରାଇଲି।

ବୋଉ ମୋର ଓ ମୋ ପତ୍ନୀଙ୍କର ବ୍ୟସ୍ତତା ଦେଖି ପଚାରିଲା - କିଏ ଆସିବ କି ?

ପତ୍ନୀ କହିଲେ ୟାଙ୍କର ସାଂଗ ଜଣେ ଆସିବେ।

ସାଂଗ, ହଉ ଭଲ ହେଲା।

ମୁଁ ବୋଉକୁ ସଂଗେ ସଂଗେ କହିଲି - ବୋଉ ଶ୍ରୀଧର ଆସିବ।

ଶ୍ରୀଧର - କୋଉ ଶ୍ରୀଧର ?

ମୁଁ କଟକରେ ପାଠ ପଢ଼ିଲା ବେଳେ ଯାହା କଥା ତୋତେ ସବୁବେଳେ କହୁନଥିଲି ଯେ ସେ କେବଳ ମେଧାବୀ ନୁହଁ ହରିଜନ ହୋଇ ବି ବ୍ରାହ୍ମଣର ସଂସ୍କାର ସବୁ କିପରି ରଖିଛି।

ହଁ - ମନେ ପଡ଼ିଲା। ସିଏ ଘରକୁ ଆସିବ! ପୁଣି ଖିଆପିଆ କରିବ ?

ମୁଁ ବୋଉର ବିସ୍ମୟ ଓ ପ୍ରଶ୍ନର କାରଣ ଜାଣୁଥିଲି, ତେଣୁ ତାକୁ କହିଲି ଯୁଗ ବହୁତ ଆଗେଇ ଗଲାଣି ବୋଉ, ତୁ ସେଇ ଜାତି କଥାଟାକୁ ଧରି ବସିଲେ ଚଳିବ।

ବୋଉ ଚୁପ୍ ରହିଲା, ଆଉ କିଛି କହିଲାନି।

ଶ୍ରୀଧର ଆମ ଘର ଖୋଜି ଆସି ପହଂଚିଲା, ଆମେ ସ୍ୱାମୀ ସ୍ତ୍ରୀ ଦୁଇଜଣ ଯାକ ତାକୁ ଗଭୀର ଆତିଥେୟତା ପ୍ରଦାନ କଲୁ। ଚାଲିଲା ଘଣ୍ଟା ଘଣ୍ଟା ଧରି ଗପ। ହଷ୍ଟେଲ ଜୀବନରୁ ଆଜିଯାଏ ଜୀବନର ସବୁ ଖବର।

ଗପ ମଝିରେ ଶ୍ରୀଧର ଚାହିଁଲା ହାତ ଘଣ୍ଟାକୁ। କହିଲା ଏମିତି ଗପୁଥିଲେ ଗପୁଥିବା । ମୋର ଟ୍ରେନ୍ ସମୟ ଆସି ହେଲାଣି, ମୋତେ ପୁଣି ହୋଟେଲକୁ ଯାଇ ବାହାରିବାକୁ ପଡିବ।

ହଉ ରହ - ମୁଁ ଗାଡ଼ି ବାହାର କରୁଛି, ତମକୁ ନେଇ ହୋଟେଲରେ ଛାଡ଼ି ଦେଇ ଆସିବି।

ଶ୍ରୀଧରକୁ ହୋଟେଲରେ ଛାଡ଼ି, ଦୀର୍ଘ ଦିନ ପରେ ଗୋଟେ ମନଖୋଲା ଗପ ଗପିବାର ସୁଯୋଗ ମିଳିଥିବାରୁ ମୁଁ ପରମ ତୃପ୍ତିରେ ଫେରୁଥିଲି ଘରକୁ। ମାତ୍ର ଘରେ ପହଂଚୁ ପହଂଚୁ ମୋର ସମସ୍ତ ତୃପ୍ତି କ୍ଷଣିକରେ ଉଭାଇଗଲା। ଘରର କବାଟ ଖୋଲୁ ଖୋଲୁ ବୋଉ କହିଲା - ରହ, ବାହାରେ ଠିଆହ, ନନା ଘର ମାର୍ଜନା କରୁଛନ୍ତି।

ମାର୍ଜନା ! ଛି - ଆମେ ଆଉ କେବେ ମଣିଷ ହେବା ?

* * *

# ॥ ବାତ୍ୟାବିତାନ ॥

ଦିନମାନ ଲାଗିରହିଥିଲା ଅବିଶ୍ରାନ୍ତ ବର୍ଷା। ଘରର ମଥାନ ଓ ବାଡିର ତାଳଗଛ ଛୁଇଁ ଉଡି ଯାଉଥିଲେ ମେଘ ଖଣ୍ଡ। ବଙ୍ଗୋପସାଗରରେ ସୃଷ୍ଟି ହୋଇଛି ଲଘୁ ଚାପ। ଆସନ୍ତା ଚବିଶ ଘଣ୍ଟା ଯାଏ ପ୍ରବଳରୁ ଅତି ପ୍ରବଳ ବର୍ଷା ହେବା ସହ ଘଣ୍ଟାକୁ ଅଶୀରୁ ଶହେ କି.ମି. ବେଗରେ ବହିପାରେ ପବନ। ମାଛ ଧରାଳୀ ମାଂନଙ୍କୁ ସମୁଦ୍ର ଭିତରକୁ ମାଛ ଧରି ନଯିବାକୁ ପରାମର୍ଶ ଦେବା ସହ ଘଣ୍ଟାକୁ ଘଣ୍ଟା ଦିଆଯାଉଥିଲା ସତର୍କ ସୂଚନା। ମେଘର ପ୍ରଳୟ ରୂପ ସାଂଗକୁ ପବନର ସୁ-ସୁ ଶବ୍ଦ ଗୋଟେ ଭୟପ୍ରଦ ସ୍ଥିତି ସହ ହେବାକୁ ଯାଉଥିବା ଏକ ଭୟଙ୍କର ପରିସ୍ଥିତିର ସୂଚନା ଦେଉଥିଲା। ସଂଜ ହେବା ପୂର୍ବରୁ ଗାଆଁର ମନ୍ଦିର ଓ ମଠର ପୂଜାନୀତି ସାରି ମୁଣ୍ଡରେ ପଖିଆ ପକାଇ ଫେରି ଯାଉଥିଲେ ପୂଜକ। ସାଧାରଣତଃ ପୂଜକଙ୍କୁ ପଖିଆ ଦେଇ ଯିବାର ଦେଖି ନଥିବା ନବ ପିଣ୍ଡାରୁ ଥାଇ ପ୍ରଶ୍ନ କଲେ - କ'ଣ ନନା,ଏ କାର୍ତ୍ତିକ ମାସରେ ତ ଗୁଆ - ପୋତା ନାହିଁ, ଯଦି ବି ଥାଆନ୍ତା ତମର ତ ସେ ଝମେଲା ନାହିଁ, ତମ ପଡିତ ମଠରେ ଫୁଟୁଛି, ତମର ପୁଣି ଏ ଅବତାର କାହିଁକି ?

ହଁ - କହିବୁନି କାହିଁକି ? ପିଣ୍ଡାରେ ବସିଛୁ ତ ଝାଡ଼ିଝୁଡ଼ି ହୋଇ। ଦେବନୀତି ହେଲା କି ନହେଲା ତମର ଚିନ୍ତା କ'ଣ ? ତମ ପେଟ ପୂରିଲା ତ ହେଲା, ମୋର ଏ ଅବତାର କଥା ପଚାରିବୁନି କାହିଁକି ?

ରାଗିଲ କି ନନା ? ତମେ ହେଲ ବ୍ରାହ୍ମଣ ଲୋକ, ପୁଣି ନୈଷ୍ଠିକ ବ୍ରାହ୍ମଣ, ତମକୁ ପଖିଆ ଦେବାର କେବେ ଦେଖି ନଥିଲି ତ ?

ଦେଖି ଥାଆନ୍ତ କେମିତି ? ଆଗରୁ କ'ଣ ଦେଖିଥିଲ କେବେ ଏମିତି ମେଘ ନା ପବନକୁ? ତମ ଗୋସେଇଁଆଣୀ ଆଜି ଦି'ପହରେ ଯାଇଥିଲେ ପୋଖରୀ ପାଣି, କୁଆଡୁ ଆଇଲା ଯେ ଦମକାଏ ପବନ ଉଠାଇନେଲା ଛତା। ଛତାକୁ ସମ୍ଭାଳିବା ଲୋଭରେ ଭିଡି ଧରିବାରୁ ଘୋଷାରୀ ହୋଇ ହୋଇ ଚାଲିଗଲେ ବହେ ବାଟ। ଛତାକୁ ସମ୍ଭାଳିବାକୁ ଯାଉ ଯାଉ

ଉଡିଗଲା ଲୁଗା। ଉଭାଲଂଗଳା ହେଉ ହେଉ ଛତାକୁ ଛାଡି ଧରିଲେ ଲୁଗାକୁ। ଛତାଟା ଯେ କୁଆଡ଼େ ଉଡିଗଲା ତା'ର ପତ୍ତା ମିଳିଲା ନାହିଁ। ଅର୍ଗ ନୂଆ ଛତାଟେ ବଟ ଦେଇଥିଲା କଲିକତାରୁ ଆଣି। ତମ ଗୋସେଇଁଆଣୀ ଫେରିବା ପରେ ମନଦୁଃଖ କରୁଥିଲା, ମୁଁ ବୁଝାଇଲି ଛତାଟା ପାଇଁ ମନଦୁଃଖ କରୁଛ, ଛତାକୁ ରକ୍ଷା କରିବାକୁ ଯାଇ ଯଦି ଲୁଗା ଉଡି ଯାଇଥାଆନ୍ତା, ଭାବତ କି ହଟ ହଟା ହୋଇନଥାନ୍ତ ? ସେଇ ତ ପଟେ ଛତା ଥିଲା ଘରେ - ଛତା ନାହିଁ ବୋଲି ଦେବ ନୀତିକୁ ତ ମାରା କରି ପାରିନଥାନ୍ତି, ଆମ ଘରେ କେଉଁ ପଖିଆ ଥିଲା ? ପଦିଆ ସାହୁ ମୁଣ୍ଡରୁ ଉଠାଇ ପରା ଗ୍ଭଲି ଆସିଛି। ରେଡିଓ କ'ଣ କହୁଛି ଏ ବର୍ଷା ପବନ କଥା ?

ରେଡିଓ ତ ଘଣ୍ଟାକୁ ଘଣ୍ଟା ସତର୍କ ସୂଚନା ଦେଉଛି। ଆଗାମୀ ଚବିଶ ଘଣ୍ଟାଯାଏଁ ଲାଗି ରହିବ ଏ ବର୍ଷା ପବନ, ପବନର ବେଗ ବି ବଢ଼ିବ।

ହାଃ - ଆହୁରି ଚବିଶ ଘଣ୍ଟା ଯାଏଁ ଲାଗିରହିବ ଏ ବର୍ଷାପବନ ? ଆରେ ବାରଘଣ୍ଟା ତ ଜମାରୁ ହୋଇନି, ଗଡ଼ିଆ ପୋଖରୀ ସବୁ ଉଛୁଳି ସାରିଲାଣି, ବର୍ଷାର ଧାର ଧରି ପା' ରାସ୍ତାକୁ ଉଠି ଆସିଲେଣି ମାଛ ସବୁ। ତୁ' କହୁଛୁ ଆହୁରି ଚବିଶ ଘଣ୍ଟା ଲାଗି ରହିବ! ଏ ପୃଥ୍ୱୀ ରହିବ ତ ? ହେ ରାଧାମାଧବ ତୁ' ହିଁ ରକ୍ଷା କର।

ଦାଣ୍ଡ ଦୁଆରେ ଝୋଟ କେରା ଓଳାଇ ବାଣୀ କାଟୁଥିଲା ନବ। ଜଣେ ଦଶ ବର୍ଷ ଓ ଆଉ ଜଣେ ବାରବର୍ଷର ପୁତୁରା ଦି'ଜଣ ମେଲା ଘରେ ପଡିଥିବା ଖଟରେ ହେଉଥିଲେ ଗଡ଼ାଗଡି। ଖଂଜାର ଅଗଣାରେ ସଂଜ ବଳୁଥିଲା ଝିଆରୀ। ସଂଗାରେ ଚଢ଼ି ଶୁଖିଲା କାଠ ଓ ଘଷି ବାହାର କରୁଥିଲା ତା' ଭାଉଜ। ଗାଧୁଆ ବେଳେ ଝୁଟ ମୁଟ୍ କଥାରେ ତା' ସ୍ତ୍ରୀ, ଭାଉଜ ସାଂଗରେ ଝଗଡ଼ା କରିଥିବାରୁ କାମ ନକରିବାକୁ ଆପସା ମାରି, ସଂଜବେଳ, ପୁଣି ଏ ଝଡ଼ ବର୍ଷାର ସଂଜ ବେଳଟାରେ ମୁହଁ ମାଡି ବିଛଣା ଉପରେ ଶୋଇ ରହିଥିଲା। ନା - ଦିନ ଦ୍ୱିପହରରୁ ଯେଉଁ ରାତି ଭଳି ଅନ୍ଧାର ଘୋଟି ଆସିଲାଣି, ଏଥିରେ ବାଣୀ କାଟି ହେବନି କହି ଓରାରେ ଗେଂଜି ଦେଲା ଟାକୁଆଟାକୁ। ଭାଉଜ ସଂଗାରୁ ଥାଇ ଡାକିଲେ - ନବ, ଦେଖିଲତ ସଂଜ ହେଲାଣି ନା ନାହିଁ, ନିରୁକୁ କୁହ ସଂଜବତୀ ଦେଇ ଦେବ। ଏ ବର୍ଷା ପବନରେ ତ ଚଉଁରା ମୂଳକୁ ଯାଇହେବନି, ଘର କୋଣରେ ଦେଇ ଦେଉ।

ସଂଜ ହେବା କଥା କ'ଣ କହୁଚ ନୂଆଉ', ରାତି ହେଲା ପରି ପା' ଲାଗିଲାଣି। ମୋର କ'ଣ ଘଣ୍ଟା ଅଛି ଯେ ମୁଁ ତୁମକୁ ସମୟ କହିବି। ଏ ପାଗର ମତିଗତି ଦେଖି ପରା ନନା ମନ୍ଦିରର ନୀତି ସାରି ଘରକୁ ଗଲେଣି, ଆଉ ଆମର ସଂଜ ଦେବାକୁ ବେଳ ହେଇନି କାହିଁକି ?

ଆଁ! ମନ୍ଦିରର ନୀତି ସାରି କି ଗଲେଣି ନନା, ଆଉ ଆମ ସାଆନ୍ତାଣୀ ଖୁମାଣ ପୋଡିକି ଶୋଇଛନ୍ତି। ଏ ତ୍ରିସନ୍ଧ୍ୟା କାଳରେ ବିଛଣାରେ ଶୋଇ କ'ଣ ଘରୁ ଲକ୍ଷ୍ମୀଙ୍କୁ ତଡିବ ?

ନିଜ ସ୍ତ୍ରୀ ପ୍ରତି ଉଦ୍ଦିଷ୍ଟ ବାକ୍ୟ ଗୁଡାକୁ ବାଆଁରେଇ ଯାଇ ନବ କହିଲା - ନିରୁ ସଂଜ ଦେଉଛି, ତମେ ତ ଶୁଖିଲା କାଠ ଓ ଘଷି ବାହାର କରୁଛ, ଏ ପାଗରେ ଦେହ, କୋଲା ମାରିଯାଉଛି, ଗ୍'ମୁନ୍ଦେ କରନ୍ତନି ?

ହଁ - ମାଇପ ଉପରେ ତ ବଳ ନାହିଁ ଫର୍ମାସ୍ କରିବାକୁ, ନୂଆଉ'କୁତ ଦେଖିଛ, ତା' ବଳ ମାତି ଆସୁଛି । ହଉ ଗୁହ ।

ଚୂଲି ତଳେ ଶୁଖିଲା ପାଇଁଶ ଦେଇ, ତା' ଉପରେ ବତୀରୁ ଟିକେ ମାଟି ତେଲ ପକାଇ ଗିଲା ହୋଇଯାଇଥିବା କାଠକୁ ଖଂଜିଲେ ନୂଆଉ । ହାତ ଚକିରେ ଘଷି ଘଷି ମାରିଲେ ଦିଆସିଲି କାଠି । ପାଉଁଶ ଉପରେ ଢଳା ଯାଇଥିବା ମାଟି ତେଲରେ ଲାଗିଲା ନିଆଁ, ହେଲେ ଧରୁନଥିଲା କାଠକୁ, ଉଠୁଥିଲା ଧୂଆଁ । ଧୂଆଁ ଘୁରୁଥିଲା ଖଂଜା ସାରା । ଧୂଆଁରେ ଆକ୍ତା ମାକ୍ତା ହୋଇ ପଡିଲା ଯାଆ ପାଖରେ ଶୋଇଥିବା ଛୁଆଟା । ନୂଆଉଁ ଡାକ ଛାଡ଼ିଲେ - ଆଲୋ ନିରୁ, ସଂଜ ଦେଇ ସାରିଲୁଣି ଯଦି ବବ୍‌ଲୁକୁ ଉଠାଇ ଆଣ ତୋ' ସାନମା' ପାଖରୁ । ଏ ଧୂଆଁରେ ଅଣନିଶ୍ୱାସୀ ହୋଇ ପଡିବ ସେ ଛୁଆଟା । ତା'ମାଆ ସାଆନ୍ତାଣୀ ଶୋଇଛି ଯଦି ଶୋଇଥାଉ, ବଡ଼ଘର ଝିଅତ, ଏ ଓଦା କାଠ ଲଗାଇ ରୋଷେଇ କରିପାରିବ ନାହିଁ, ମୁଁ କରିଦେବି ।

ଚକାମାଡି ଶୋଇଥିବା ନାଗସାପର ଫଂଣାରେ ଗୋଡ଼ ପଡ଼ିଗଲେ ସେ ଯେମିତି ଫଅଁ କରି ଉଠେ, ସେମିତି ଫଅଁ କରି ଉଠିଲା ସେ । କ'ଣ କହିଲ - କ'ଣ କହିଲ, ବଡ଼ ଘର ଝିଅ ? ନୁହେଁ କି ମୁଁ ବଡ଼ ଘର ଝିଅ ? ମୋ' ବାପା ତ ମୋତେ ତମ ଭଳିକା ତୋଳା କନିଆଁ କରି ଟେକି ଦେଇନି ? ପର ଦୁଆରେ ମୂଲ ନ ଲାଗିଲେ ଆମ ଘରର ଚୂଲି ତ ଜଳୁନି ? ସୁଆଦିଆ ଗେଫା ପେଲିବା ପାଇଁ ମୋ ବାପ ତ ଏଠି ଆସି ମାସରେ ଆଠ ଦିନ ପଡି ରହୁନି ? ତମେ କାହାକୁ ଫୁଟାଣି ଦେଖାଇବ ମ', ଝିଅ ଦେଲାର ଦି'ବର୍ଷ ଯାଏଁ ପରା ଏ ଘରୁ ପାଣି ଗିଲାସଟିଏ ଛୁଇଁନଥିଲା ମୋ ବାପ, ଏ ବବ୍‌ଲୁ ଜନ୍ମ ନହୁଏ, ତା' ଏକୋଇଶା ପୂଜାକୁ ନଆସନ୍ତି, ଏ ଘରେ ପାଣି ନଛୁଅଁନ୍ତି । ପୂଜାକୁ ଆସିଥିଲେ ବି କୋଉ ମାଗଣା ? ଦି' ଭରି ରୂପାର ବଳା ଓ ତାବିଜ ପରା ଦେଇଛନ୍ତି ମୋ ପୁଅକୁ । ଝିଅକୁ ଶାଢ଼ୀ, ଜୋଇଁକୁ ଯୋଡ ଓ ପିଲା ପାଇଁ ଡ୍ରେସ୍ । ନ ହେଲା ନାହିଁ ମୋ ବାପ ବଡ଼ ଲୋକ, ହେଲେ ଅନ୍ୟମାନଂକ ପରି ସିଏ ମାଗିଖିଆ ନୁହେଁ କି ମାନ୍ ଇଜ୍ଜତ ନଥିବା ଲୋକ ନୁହଁନ୍ତି ।

ହେଏଇ, ଅତି ବଢ଼ି ବଢ଼ି ଗର୍ବ କରି କଥା କହନି ଲୋ, ମଣିଷ ଗର୍ବକୁ ଭଗବାନ ସହିଲେ ହେଲା ।

ସତ କଥା କହିଲେ ଦେହରେ ଲାଗି ଯାଉଛି ନା ? ମୋତେ ଢ଼ମ ପେଲି ଆସେନା କି ଫୁଟାଣି ମାରି ଆସେନା, ଯାହା ସତ ତାହା କହିଲି - ତମକୁ ଯଦି ଗର୍ବ ବୋଲି ଲାଗୁଛି ଲାଗୁ,

ଭଗବାନଙ୍କୁ ଡାକୁଛ ତ ଡାକୁଥା', ସେ ତ ତମରି ଏକା ଠିକା ନେଇଛନ୍ତି, ତମରି କଥା ଶୁଣିବେ, ନୁହଁ ?

ଆଲୋ କଣ୍ଟା ବାଡ଼ରେ ଲୁଗା ପକାଇ ଚିରିବା ଭଳି ଏମିତି କଳି କାହିଁକି କରୁଛୁ ? ମୁଁ ବା ତତେ କ'ଣ କହିଲି ଯେ, ତୁ ଏମିତି ଝୋଟରେ ନିଆଁ ଲାଗିବା ପରି ହେଉଛୁ ?

କ'ଣ ଆଉ କହି ଥାଆନ୍ତ କି ? ମୁଁ ସାଆନ୍ତାଣୀ ହୋଇ ଶୋଇଛି, ତମେ ଖଟି ଖଟି ମରୁଛ ତ ?

ନବ ଦେଖିଲା ନୂଆଉ' ଓ ତା' ସ୍ତ୍ରୀ ଭିତରେ କଥା କଟାକଟି ଯେମିତି ଲାଗିଲାଣି, ଗାଧୁଆ ବେଳ ପରି ପୁଣି ବହେ ରାମାଭୀମା ଝଗଡ଼ା ଲାଗିଯିବେ, ତେଣୁ ସେପଟରୁ ଧ୍ୟାନ ହଟାଇବାକୁ ଯାଇ କହିଲା - ନୂଆଉ' ଗ୍ୟ' ମୁନ୍ଦେ ଝଅଟ କରମ, ଦେଖୁଛ ତ ଏ ପାଗରେ ଦେହ କେମିତି ଜାଡ଼େଇ ଗଲାଣି ।

ହେଇ ହଉଛି ପା', ଦେଖୁଛ ତ ଏ ପାଗରେ ଜାଳ ସବୁ କାଲୁଆ ମାରିଛନ୍ତି, ନିଆଁ ଜଳିଲେ ତ ହାଣ୍ଡି ବସାଇବି ଗ୍ୟ' ପାଇଁ, ଏ ଧୂଆଁରେ ବସାଇଲେ ଧୂଆଁଟିଆ ଲାଗିବନି ।

ଭାଉଜର ଦିଅର ପ୍ରତି କଅଁଳ କଥା ଶୁଣି ରାଗରେ ଜଳିଯାଇ ତା' ସ୍ତ୍ରୀ କହିଲା - ହଁଅ, କଅଁଳ କଥା କହି, ସାକୁଲେଇକି ଦିଅରକୁ ତ ଗଦ ଶୁଂଘେଇ ମେଣ୍ଢା କରି ରଖିଛ ନା, ସ୍ୱାର୍ଥ କ'ଣ ଜାଣିନି କି ମୁଁ? ଆଉ ବର୍ଷ ଦି'ଚାରିଟା ଗଡିଗଲେ ଝିଅର ବାହାଘର, ପୁଅମାନଙ୍କର ପାଠ ପଢ଼ା । ଏପଟେ ସିନା ଦିଅରକୁ ପାଳେଇ କି ରଖିଥିଲେ ସେ ବିଲରେ ସକାଳୁ ସଂଜ ଖଟି ଖଟି କୁଟୁମ୍ବକୁ ପୋଷିବ, ଗେରସ୍ତ ସେପଟେ କଲିକତା ଚକିରିର ପଇସାକୁ ଜମା ରଖି ରଖି ଚାଲିଥିବ । ଆପଣା ସୁନା ତ ଭେଣ୍ଡି, ମୁଁ ତୁଚ୍ଛାକୁ ପରକୁ ଦୋଷ ଦେଇସିନା କୋରିକଚଡି ହେଉଛି । କ'ଣ ନା ମାଆ ସମାନ ଭାଉଜ, ପିଲାଟି ଦିନରୁ କୋଳେଇ କାଖେଇ ମଣିଷ କରିଛନ୍ତି । ମାଆ ମରିଯାଇଥିଲା ସିନା ମାଆର ଅଭାବ କ'ଣ ଜାଣିନଥିଲି, ଆରେ ଯଦି ମନରେ ମାଆ ଭଳି ଶରଧା ଥିଲା, ତେବେ ପଢ଼ାଇଲା ନାହିଁ ପାଠ, ନେଇଗଲାନି କଲିକତାକୁ କେଉଁ ସାହେବକୁ କହି ଚକିରିରେ ଭର୍ତ୍ତି କରିଦେବାକୁ । ଏଠି କାହିଁକି ଖରା ନାହିଁ, ବର୍ଷା ନାହିଁ ମାଟି ସାଂଗରେ ମାଟି ହୋଇ ଚଷ କରିବାକୁ ଛାଡ଼ି ଦେଲା ? କି ଚଷ ଯେ ଏଠି, ଫିଇସନ ତ ଧୋଇ ? ସେଥିକୁ ଭରସା କରି କେଉଁ ଭବିଷ୍ୟତ ଗଢ଼ିଦେବ ? ଦେଖିବ ଥା', ହେଇ ମୋ କାନିରେ ଗଣ୍ଠି ପକାଇଲି, ସ୍ୱାର୍ଥ ସରିଲେ କେମିତି ଅବସ୍ଥା ହେବ - ମଦ ଘଡ଼ା, କାମ ସରିଲେ ଗଡ଼ ଗଡ଼ା ପରି ତମକୁ ଦୂରେଇ ଦେବେ । ମୋ କଥାକୁ ଏଇନେ ହେଜୁ ନଥାଆ, ମାତ୍ର ହେଜିଲା ବେଳକୁ ନେଢ଼ି ଗୁଡ଼ କୋହୁଣୀକୁ ବୋହି ସାରିଥିବ ।

ହଁ ଲୋ, ତୁ କହିବୁ ନାହିଁକି ଏବେ ସୁଆର୍ଥ କଥା। ତୁ ତ ସେ ଦିନ ଦେଖିନୁ। ବାପ ମରିଥିଲା ପିଲା ବେଳୁ, ଯେଉଁ ବୟସରେ ପିଲା ଧୂଳି ଘର କରି ଖେଳନ୍ତି, ସେଇ ବୟସରୁ କାନ୍ଧରେ ଜୁଆଳି ପକାଇ ସମ୍ଭାଳିଥିଲା ଏ ପରିବାରକୁ ମୋ ଗେରସ୍ତ। ଭାଇ ବଡ଼ ହେବାରୁ, ଦି'ଭାଇ କେତେ ଘାଣ୍ଟିହେବେ ଦି'ମାଣେ ଜମିରେ ବୋଲି ଘର ଛାଡ଼ିଲେ। ସେଠି କେଉଁ ସାହେବ ଘରକିରିଟାଏ ବା କରିଛନ୍ତି, କା' ବଗିଚାର ମାଳି କାମ ତ? ଘରଭଡ଼ା ବେଶି ପଡିବ ବୋଲି, ଗୋରୁ ଖୁଆଡରେ ରହିବା ଭଳି ଛଅ ସାତ ଜଣ ବଖରାଏ ଘରରେ ମୁଣ୍ଡ ଗୁଂଜୁଛନ୍ତି। ପେଟକୁ ନଖାଇ ଟଂକା ସଂଚୁଛି, ମାଆ ମଲାବେଳକୁ କଣ୍ଟ କବଲା କରିଥିବା ପାଳ ଜମି ଦି'ପା ଫେରାଇ ଆଣିଲେ, ଘରକୁ ଫେରି ଦି' ଭାଇ ମିଶି ଚାଷ କରିବେ। ଯାନାଆନା ସହ ଘରର କପଡ଼ା ଲତା, ବନ୍ଧୁବାନ୍ଧବ, କିରାଣା ସାମାନର ଖର୍ଚ୍ଚର ଦାୟିତ୍ୱ ତ ତୁଲାଉଛନ୍ତି ନା? ନବ ଏପଟେ ଚାଷ, ବାସ, ଗାଈଗୋରୁ ଦାୟିତ୍ୱ ସମ୍ଭାଳିଲେ ବି ସିଏ ତ ସବୁ ବାହାରିଆ ଦାୟିତ୍ୱ ନେଇଛନ୍ତି।

କୁହନା ମ' ସେ ଦାୟିତ୍ୱ ନେବା କଥା, ଦାୟିତ୍ୱକୁ କାନ୍ଧେଇ କାନ୍ଧେଇ ପରା ତାଂକ କାନ୍ଧରେ ବିଣ୍ଡି ପଡିଗଲାଣି।

ନବ ଆଉ ସମ୍ଭାଳି ପାରିଲାନି - ନିଜ ସ୍ତ୍ରୀ ଉଦ୍ଦେଶ୍ୟରେ କହିଲା, ହେଏଇ, ପାଟି ବନ୍ଦ କରୁଛୁନା ଦେଖିବୁ ଏଇକ୍ଷଣି? ରାତି ପାହିବା ଠାରୁ ଶୋଇବା ଯାଏ ୟା'ର ପାଟିଟା ଦଳେଇ ଘାଇ ପରି ମୁକୁଳା ରହୁଛି। ଯାହା ଆଇଲା ମନକୁ କହି ଯାଉଛି, ବଡ଼ ସାନ, ଗୁରୁ ଗୁରୁଜନ ଜ୍ଞାନ ରହୁନି। ଭାଉଜ! ତମେ ତା' ସହ ମୁହଁ ଯୋଡୁଥିବ ନା ଆମକୁ କ'ଣ ଟିକେ ଦେବ ପାଟିରେ ପକାଇବା ପାଇଁ? ମୁଢ଼ି ଫୁଢ଼ି ଅଛି ଯଦି ମୁଠେ ଦିଅ, ପିଲାମାନଂକ ସହ ମିଶି ମୁଠେ ପାଟିରେ ପକାଉ ଥାଏ, ଚା' ହେଲେ ପିଇବି।

ଆହା - ଆହାରେ ମୋ କାଢୁଆ ମର୍ଦ୍ଦଟା, ପାଟି ବନ୍ଦ ନ କଲେ କ'ଣ ଦେଖାଇବୁ? ମୋରି ପାଟିଟା ୟାଂକୁ ଖାଲି ଶୁଭିଯାଉଛି ଆଉ ଭାଉଜ ପାଟିଟା ସୁଆଦିଆ ଲାଗୁଛି - ନୁହଁ?

ବନ୍ଦ କରୁଛୁ ନା....? ଚାଳରେ ଖୋସା ଯାଇଥିବା ହଳୁଆ ପାଞ୍ଚଣ ଟା ଟାଣି ଆଣି ରାଗ ତମ ତମ ହୋଇ ଠିଆ ହୋଇଗଲା ନବ। ଚୂଲି ମୁଣ୍ଡରୁ ଦଉଡି ଆସି ଆଗରେ ଠିଆହୋଇ ପଡି ଭାଉଜ କହିଲେ - ନବ, ସେ ଭୁଲ ଜମା କରିବନି, ଲକ୍ଷ୍ମୀଛଡ଼ା ହୋଇ ବୁଲିବ କି? ସିଏ ତ ତା'ର ମୋତେ କହୁଛି, କହୁ, ତମକୁ ତ ମୁଁ ମନା କରିଛି ନା ମାଇପି କଳିରେ ମୁଣ୍ଡ ପୂରାଇବାକୁ?

ତମକୁ ଏତେ ଦିହନଗା କଥା କହୁଥିବ, କେତେ ବା ମୁଁ ଶୁଣୁଥିବି ନୂଆଉ?

ମତେ ବି କ'ଣ ଭଲ ଲାଗୁଛି ଶୁଣିବାକୁ, ଯେଉଁ ସାଇପଡିଶା ଦିନେ ତମ ଦି' ଭାଇଂକ ଉଦାହରଣ ନେଉଥିଲେ, ସେମାନେ ଏବେ କାନ ପରି ଶୁଣୁଛନ୍ତି ଆମର ଝଗଡ଼ାକୁ । ତମେ କ'ଣ ଭାବୁଛ ମୁଁ ଜାଣିନାହିଁ ଲବଂଗର ମନକଥା ? ତା'ର ଭିନେ ଘରଠି ମନ। ନିଇତି ନିଇତି ଅଶାନ୍ତି ହେବାଠାରୁ ଚୂଲି ଅଲଗା କରି ଯେଝା ଭାଗ୍ୟ ନେଇ ଚାଲିଗଲେ ହୁଅନ୍ତା, କଥାରେ ନାହିଁକି ଯେତେ କନିଆଁ ସେତେ ବର, ଯେତେ ଭାଇ ହେତେ ଘର। ତମ ଭାଇଂକୁ ଦିନେ କହିଲି ଏକଥା, ସିଏ ମୋତେ କ'ଣ କହିଲେ ଜାଣ ? ନବ କ'ଣ ମୋର ଭାଇ ଯେ, ମୁଁ ତା'ଠାରୁ ଭିନେ ହେବି ? ତମ ମାଇପି କଳିକୁ ଆମ ଭାଇଂକ ଭିତରକୁ ଆଣିବ ନାହିଁ। ତାକୁ ପୁଅବୋଲି ଭାବିକରି ତ ଗଲାଣି ଏତେ ବୟସ, ଆଉ ବା କେତେ କାଳ ବଂଚିବି, ଘର ମଝିରେ ବାଡ଼ ଦେବି ?

ଓହୋ – ଭିନ୍ନେ ଘରଠି ମନ ବଳିଥିଲା, ଗେରସ୍ତ ସମ୍ଭାଳି ପାରିବ ନାହିଁ ବୋଲି କଥା ଟାଳି ଦେଲା ତାହାଲେ ?

ନୂଆଉ' ତମେ ତା' କଥାକୁ କାନ ନଦେଇ ଦେଲ ଆମକୁ କ'ଣ ଟିକେ ପାଟିରେ ପକାଇବାକୁ। ଦେଖ ଏ ପ୍ରଳୟ ଯେମିତି ମାଡି ମାଡି ଆସୁଛି, ଏ ରାତି କଟିଲେ ବଂଚିଲ ବୋଲି ଜାଣିବ, ସେଥକୁ ଏତେ ଲୋଭ। ତମେ ଘରର କବାଟ କଣ୍ଟା ବନ୍ଦ କର, ମୁଁ ଗୁହାଳେ ଗାଈ ବଳଦଙ୍କ ବେକରୁ ପଘା ଖୋଲିଦିଏ, କିଏ ଜାଣେ କେତେବେଳେ କ'ଣ ଘଟିବ ?

ଥମିଗଲା କଳି, ହେଲେ ବଢୁଥିଲା ଝଡ଼ର ପ୍ରକୋପ। ସୁସୁରୀ ମାରିଲା ପରି ସୁ-ସୁ ଶବ୍ଦଟିଏ ଲାଗି ରହିଥିଲା ଅନବରତ। ଉଡ଼ୁଥିଲା ନଡ଼ା, ମଡ଼ ମଡ଼ କରି ଭାଂଗୁଥିଲା ତାଳପତ୍ର, ଯହୁଁ ଯହୁଁ ବଢୁଥିଲା ରାତି, ତହୁଁ ତହୁଁ ବଢୁଥିଲା ପବନର ବେଗ। ରାତି ଘଡିଏ ନହେଉଣୁ ଖିଆପିଆ ସାରି କିଳା ହେଲା କବାଟ କଣ୍ଟା, ହେଲେ ଧଡ଼ ଧାଡ଼ ହୋଇ ପିଟି ହେଉଥିଲା କବାଟ, ଖୋଲି ଯାଉଥିଲା ଝରକା। ପବନ ତ ନୁହେଁ ବାବନା ଭୂତ ଯେପରି ନାଚୁଥିଲା ଘର ଭିତରେ।

ରାତି ଅଧ ବେଳକୁ ପବନର ବେଗ ସମ୍ଭାଳି ନପାରି ଶୋଇ ପଡିଲା ଜାଳ ଗୁଳିଆ, ରୋଷେଇ ଘର, ଗୁହାଳ ଘର। ହମ୍ବାଳି ଛାଡି ଗୁହାଳ ଛାଡ଼ି ଦେଲେ ଗାଈ ଗୋରୁ। ଉଠା ପକା ହେଉଥିଲା ଘରର ଛପର। ମଝିରେ ମଝିରେ ଦୂରରୁ ଭାସି ଆସୁଥିଲା ଆର୍ତ୍ତଚିତ୍କାର, ହେଲେ ପବନର ସୁ-ସୁ ଶବ୍ଦ ଭିତରେ ମିଳାଇ ଯାଉଥିଲା ସେ ଶବ୍ଦ। ଘରୁ ବାହାରି କାହାର କ'ଣ ଘଟିଛି ଜାଣିବାକୁ ଜୁ ନଥିଲା।

ଖଂଜାର ଦୁଇଟି ବଖରା ସାମ୍ନା ସାମ୍ନି, ମଝିରେ ଅଗଣା, ଆର ଘରେ ଶୋଇଥିଲେ ନବ, ଲବଂଗ ଓ ତା'ର ପୁଅ, ଏପଟ ଘରେ ତା' ଭାଉଜ। ପବନରେ ଉଡି ଯାଇଥିଲା ନଡ଼ା, ବର୍ଷା ମାଡ଼ରେ କାନ୍ଥରୁ ଖସୁଥିଲା ଦଲ୍‌କା ଦଲ୍‌କା ମାଟି। ନଇଁ ଆସୁଥିଲା କାନ୍ଥ। ପଡିବ

ପଡିବ ହେଉଥିଲା, ଏ ଘର ଭିତରେ ରହିବା ନିରାପଦ ନୁହେଁ ଭାବି ପିଲା ତିନିଟାଙ୍କୁ ଧରି ନୂଆଉ' ବାହାରି ପଡିଲେ ପଦାକୁ। ନବ ଶୋଇବା ଘରର କବାଟ ବାଡ଼େଇ କହିଲେ ଉଠ, ଉଠ।

ପବନ ମାଡକୁ ଏ କବାଟ ବାଡ଼ା ମୋଟେ ଶୁଭୁନଥିଲା ନବକୁ। ପବନ ଦାଉରୁ ନିଜକୁ ରକ୍ଷା କରିବା ପାଇଁ ଚେଷ୍ଟା କରି କରି ସଂପୂର୍ଣ୍ଣ କଳା ପଡିଯାଇଥିବା ଲଣ୍ଠନଟି କେବଳ ଏକ ଆଲୋକ ଉତ୍ସର ସ୍ମୃତି ଜାହିର କରୁଥିଲା ସିନା ଆଲୋକ ପ୍ରଦାନରେ ପ୍ରକାଶ କରୁଥିଲା ଅକ୍ଷମତା। ସେହି ସ୍ତିମୀତ ଆଲୋକରେ ନୂଆଉ ଦେଖିଲା ନଇଁ ନଇଁ ଆସୁଛି ନବ ଶୋଇବା ପରେ କାନ୍ଥ। କାନ୍ଥ ପଡିଯିବ ନବ, ତା ସ୍ତ୍ରୀ ଓ ପିଲାଟି ଉପରେ ଭାବି ଜୋରରେ ଚିତ୍କାର ଛାଡ଼ି ହୁରି ପକାଇଲା ନୂଆଉ। ଧଡ଼କିନା ବିଛଣା ଉପରୁ ଉଠି ଆସି କବାଟ ଖୋଲିଲା ନବ। ବାହାର, ଜଲଦି ବାହାର କହି ଟାଣି ଆଣିଲା ସେମାନଂକୁ। ସେମାନେ ଚାଲି ଆସିଲେ ସିନା ଭିତରେ ରହିଗଲା ପୁଅ। ସେମାନଂକୁ ଖାଲି ହାତରେ ଦେଖି ନୂଆଉ ପଚାରିଲା ପୁଅ ?

ଭିତରେ ପୁଅ, ଆଉ କାଳ ବିଳମ୍ବ ନକରି ଭିତରେ ପଶି ଉଠାଇ ଆଣିଲା ତାକୁ ନୂଆଉ। ଘରର ବନ୍ଧ ତେଇଁଛନ୍ତି କି ନାହିଁ ଧୁସ୍ କରି ଶୋଇ ପଡିଲା କାନ୍ଥ। ହେ ଭଗବାନ କହି ସମସ୍ତେ ବାହାରି ଆସିଲେ ଘରୁ। ବର୍ଷା ପବନକୁ ଖାତିର ନକରି ଧାଇଁଲେ ମନ୍ଦିର ଭିତରକୁ। ମନ୍ଦିର ପାଖରେ ପହଂଚିଲା ବେଳକୁ ଆଗରୁ ପହଂଚି ସାରିଥିଲେ ନନା ଓ ଗୋସେଇଁଆଣୀ। ୟାଂକୁ ଦେଖୁ ଦେଖୁ ଖୋଲି ଦେଲେ କବାଟ। ମନ୍ଦିର ଭିତରେ ବସି ସାମାନ୍ୟ ନିରାପତ୍ତାର ଆଶ୍ୱସ୍ଥି ଆସିବାରୁ - ଲବଂଗ କହିଲା, ଆଉ ଗୋଟିଏ ମୁହୂର୍ତ୍ତ ଯାଇଥିଲେ ମୁଁ କ'ଣ ପାଇଥାଆନ୍ତି ମୋ ପୁଅକୁ ? ଦେଖତ ମୁଁ ଚଣ୍ଡାଳୁଣୀ ପ୍ରାଣ ବିକଳରେ ଘରୁ ବାହାରି ଆସିଲି, ହେଲେ ଭୁଲି ଯାଇଥିଲି ପୁଅକୁ ଆଣିବାକୁ। ତମେ ଯଦି ଠିକ୍ ସମୟରେ ନଆସି ଥାଆନ୍ତ ଏବଂ ଶେଷ ମୁହୂର୍ତ୍ତରେ ଯାଇ ପୁଅକୁ ଉଠାଇ ଆଣିନଥାନ୍ତ, ତେବେ ଆମେ ତିନିଜଣ ଯାକ ତ ଯାଇଥିଲୁ ଆଜି। ଆମକୁ ରକ୍ଷା କରିବାକୁ ଭଗବାନ ତମକୁ ପଠାଇଥିଲେ ଜାଣ। ଏକଥା କହିବା ବେଳେ କୃତଜ୍ଞତାରେ ପୋତି ହୋଇ ପଡୁଥିଲା ଲବଂଗର ମନ ଓ ପ୍ରାଣ।

ପ୍ରବଳ ପବନ ସାଂଗକୁ ବର୍ଷା। ଲାଗୁଥିଲା ଏ ପୃଥିବୀକୁ ସମୂଳେ ଧ୍ୱଂଶ କରିବାକୁ ବଦ୍ଧ ପରିକର ହୋଇ ଯେମିତି ଆସିଛି ସେ। ମଝିରେ ମଝିରେ ବିଜୁଳିର ଚମକ ଦେଖାଇ ଦେଉଥିଲା ଧ୍ୱଂସର ଚିତ୍ର। ଲାଗୁଥିଲା ଗଛ, ବୃକ୍ଷ, ଘର ଦ୍ୱାର ସବୁ ଯେମିତି ସମତୁଲ ହୋଇଯାଉଛି। ସମସ୍ତେ ଆତୁରରେ ପ୍ରାର୍ଥନା କରୁଥିଲେ ମନ୍ଦିର ଭିତରେ - ଏ କାଳରାତି ଶୀଘ୍ର ପାଇଯାଉ ଭଗବାନ। ହେଲେ ପାହୁନଥିଲେ ରାତି - ଗୋଟିଏ ଗୋଟିଏ ଘଡ଼ି ବି ଲାଗୁଥିଲା ଯୁଗଟିଏ ପରି।

ସବୁ ଆଶଙ୍କାର ଅନ୍ତ ଘଟାଇ ଶେଷକୁ ରାତି ପାହିଲା । ରାତି ପାହିବା ବେଳକୁ କମି ଯାଇଥିଲା ଝଡ଼ର ପ୍ରକୋପ । ନୀଳଦିଆଧଳା ଶାର୍ଟ ପରି ଆକାଶ ବି ହୋଇଯାଇଥିଲା ସ୍ୱଚ୍ଛ । ସକାଳ ହେଉ ହେଉ ବିଛାଡି ହୋଇ ପଡିଲା ଟାଇଁ ଟାଇଁ ଲାଗୁଥିବା ସୁନାରଂଗର ଖରା । ନିଜ ନିଜ ଢ଼ିଅ ଉପରେ ଛିଡ଼ା ହୋଇ ସମସ୍ତେ କଳୁଥିଲେ କାଳ ରାତିର କରାଳ କାରନାମାକୁ । ନବବି ମନ୍ଦିର ଛାଡ଼ି ଧାଇଁଲା ନିଜ ଘରକୁ । ଶାଗୁଣାଖିଆ ଗୋରୁକଂକାଳ ପରି ଘରଟି ହାମୁଡାଇ ପଡି ରହିଥିଲା ଢ଼ିଅ ଉପରେ । ବାଉଁଶ ଫାଙ୍କରୁ ଦିଶୁଥିଲା ଖଟ, ସିନ୍ଦୁକ, ବାକ୍ସ ଓ ରୋଷେଇ ଘରର ସାଜସରଂଜାମ ହାଣ୍ଡି, କଢ଼େଇ, ସସ୍‌ପେନ୍, ଗ୍ଲ' ଛଣା ଇତ୍ୟାଦି । ପବନ କୋପରୁ ଯାହା ବର୍ତ୍ତି ଯାଇଥିବ ତାକୁ ତ ହେପାଜତ କରିବାକୁ ପଡିବ ଭାବିଲା ନବ । ହେଲେ ଏବେ ତ ଘରକୁ ଟେକି ଉଠାଇବା ପାଇଁ କେହି ମିଳିବେ ନାହିଁ, କାରଣ ସମସ୍ତେ ତ ନିଜ ନିଜ ଘର ଓ ଘରକରଣା ସାଉଁଟି ସଜାଡିବାରେ ବ୍ୟସ୍ତ ଥିବେ । ଭାବିଲା ଯାଉଛି ଡାକି ବି ନୂଆଉଙ୍କୁ, ଟିକିଏ ସାହାଯ୍ୟ କଲେ ଜିନିଷ ପତ୍ର ଅନ୍ତତଃ ବାହାର କରିବ ।

ନୂଆ ବୋଉଂକୁ ଡାକିଲା ବେଳକୁ ସେ ଉଠାଇ ପାରୁନଥିଲେ ଗୋଡ । କ'ଣ ହେଲା ବୋଲି ବ୍ୟସ୍ତ ହୋଇ ପଚାରିଲା ନବ । ନୂଆଉ, କହିଲେ - ନା ସେମିତି କିଛି ନୁହେଁ, କାଲି ରାତିରେ ପୁଅକୁ ଉଠାଇ ଆଣୁ ଆଣୁ କାନ୍ଥର ଦଲକାଏ ମାଟି ପଡିଯାଇଥିଲା ପାଦ ଉପରେ । ସେ ହୋସ୍‌ରେ କିଛି ଜଣା ପଡିନଥିଲା । ଏବେ ଦେଖିଲା ବେଳକୁ ଫୁଲିଯାଇ ଗୋଡ ଉଠାଇ ହେଉନି ।

ବିନ୍ଧା ବିନ୍ଧି କରୁଛି କି ?

ନା - ବିନ୍ଧା ବିନ୍ଧି ନାହିଁ, ହେଲେ ଦରଜ ହୋଇଯାଇଛି ।

ରକ୍ଷା ହୋଇଛି ହାଡ଼ ଭାଂଗି ନାହିଁ ।

ହଉ ତମେ କ'ଣ ପାଇଁ ଖୋଜୁଥିଲ ?

ନା - ଆଉ କହି ଲାଭ କ'ଣ, ମୁଁ ଦେଖୁଛି ଯଦି କିଏ ମିଳିଲା ତେବେ ଜିନିଷ ପତ୍ର ଉଠା ଉଠି ସହ ଘର ସଜାଡିବାର ବ୍ୟବସ୍ଥା କରିବି । ଭାଇଂକୁ ମଧ୍ୟ ତାରଟିଏ କରିଦେବି, ଘର ଓ ଗାଆଁ ଉପରେ ଏତେ ବଡ଼ ବିପତ୍ତି ପଡିଛି, ରେଡିଓରୁ ଯଦି ସେ ଖବର ଶୁଣୁଥିବେ ତାଂକ ମନ ବି କଲ ବଲ ହେଉଥିବ ।

ମୋ ଗୋଡ କଥା ଚିନ୍ତା କରନା, ତମେ ଚାଲ ମୁଁ ଛୁଆଁକୁ ଧରି ଯାଉଛି । ମିଳିମିଶି ସବୁ ସଜାଡ଼ି ଦେବା, ଲବଂଗକୁ କହୁଛି ସେ ବବ୍‌ଲୁକୁ ସମ୍ଭାଳି ଥାଉ, କିଛି ଗୋଟାଏ ବ୍ୟବସ୍ଥା କଲେ ଯିବ ।

ପୁତୁରା, ଝିଆରୀ, ନୂଆଉ ଓ ନବ ମିଶି ସଜାଡୁଥିଲେ ଘର, ଲବଂଗ ସେଠି ପହଂଚି କହିଲା - ତମ ଗୋଡ଼ ଫୁଲିଛି ପରା, ତମେ କେବଳ ପୁଅକୁ ଧରି ବସ, ମୁଁ ଦେଖୁଛି ସେ କାମ। ନବକୁ ଚାହିଁ କହିଲା, ହେଇ ହେଇ ସିନ୍ଦୁକ ତଳେ ଯେଉଁ ଛୋଟ ବାକ୍ସଟି ଦିଶୁନି, ସେଇଟାକୁ ଆଗେ ବାହାର କର।

ସେ ଭଂଗା ବାକ୍ସଟାକୁ ଏତେ ଲୋଭ କାହିଁକି ? - ନବ ପଚାରିଲା। ନା - ଲୋଭ ନୁହେଁ, ତମ ଗୋଡ଼ ମଚକି ଥିଲା ବେଳେ ଖବର ପାଇ ନନା କଲିକତାରୁ ସେ ମାଲିସ୍ ତେଲ ପଠାଇଥିଲେ, ସେଥିରେ ଦି'ଥର ମାଲିସରେ ତମ ଦରଜ କୁଆଡ଼େ ଚାଲି ଯାଇଥିଲା। ସେ ତେଲ ଶିଶିଟା ସେ ବାକ୍ସ ଭିତରେ ଅଛି, ସେଟାକୁ ବାହାର କଲେ ମୁଁ ଅପାଂକ ଗୋଡ଼ ମାଲିସ୍ କରିଦେବି।

ନିଜ କାନକୁ ବିଶ୍ୱାସ କରି ପାରିଲା ନାହିଁ ନବ, ହେଲେ କଥାଟାକୁ ଆଉ ଥରେ ଶୁଣିବା ପାଇଁ ପଚାରି ଦେଲେ ତାର ମାଧୁର୍ଯ୍ୟ ନଷ୍ଟ ହୋଇଯିବ ଭାବି ସେ ଗଳିଲା ସେ ଶୋଇଲା ଘର ଭିତରକୁ ଓ ଧରି ଆସିଲା ସେ ବାକ୍ସଟିକୁ। ବାକ୍ସଟି ହାତରେ ଧରି ଲବଂଗ କହିଲା, ଦେଖ ରୋଷେଇ ଘରଟାକୁ ଆଗେ ଟିକେ ସାଇଜ୍ କର, ଯାହାବି ହେଲେ ଗଣ୍ଡେ ଫୁଟାଇ ଏ ପିଲାଂକ ପାଟିରେ ଦେବାକୁ ପଡିବ, ଆମେ ବଡ଼ମାନେ ସିନା ଆପଦକୁ ଦେଖି ଭୋକକୁ ସମ୍ଭାଳି ନେବା, ହେଲେ ଏ ପିଲାଏ କ'ଣ ପାରିବେ ?

ଲବଂଗର କଥା ଶୁଣି ନବ ଭିତରେ ମାଡି ପଡୁଥିଲା ଶତସିଂହର ବଳ। ସେ ପୁତୁରା ଦିଇଟାକୁ ସାଂଗରେ ଧରି ସଜାଡୁଥିଲା ଘର। ଲବଂଗ ଓ ତା' ଝିଆରୀ ମିଶି ସଜାଡୁଥିଲେ ରୋଷେଇ ଘର। ଆପାତତଃ ରୋଷେଇ ପାଇଁ ବ୍ୟବସ୍ଥା ହୋଇଯିବା ପରେ ଚୁଲି ଲଗାଇଲା ଲବଂଗ। ପ୍ରଥମେ ତିଆରି କଲା ଗରମ ପାଣି। ଚା ସସ୍‌ପେନ୍‌କ ଚୁଲି ଉପରେ ବସାଇ ଝିଆରୀକୁ କହିଲା, ଟିକେ ଦେଖୁଥା'ତ ଚା' ବସାଇଛି, ପାଣି ଫୁଟିଲେ ଚା' ପକାଇବା, ମୁଁ ଏ ଗରମ ପାଣିରେ ଅପାଂକ ଗୋଡ଼କୁ ସେକ ଦେଇଦିଏ। ଅଲଗୁଣିରୁ ପୁରୁଣା କପଡ଼ାଟିଏ ଟାଣି ସେଥିରେ ସେକ ଦେଲା ଓ ସେକ ଦେଇସାରି ତେଲ ମାଲିସ୍ କଲା। ଉଃ-ଆଃ ହୋଇ ଥାଉ - ଥାଉ କହୁଥିଲା ଅପା। ରୁହ - ରୁହ, ଠିକ୍ ଭାବରେ ମାଲିସ୍ ନକଲେ ରହି ରହିଯିବ ଯେ, ପରମ ତୃପ୍ତିରେ ଏ ଦୃଶ୍ୟ ଦେଖୁଥିଲା ନବ।

ସନ୍ଧ୍ୟା ଭିତରେ ଆପାତତଃ ରାତିରେ ରହିହେବା ଭଳି ଗୋଟିଏ ଘରକୁ ସମସ୍ତେ ମିଳିମିଶି ସଜାଡି ଦେଇଥିଲେ। ବଡ଼ ଖଟଟି ଉପରେ ପୁତୁରା ଝିଆରୀ ତିନିଜଣ ଓ ପୁଅକୁ ଧରି ବସିଥିଲା ନବ। ଭାଉଜ ତଳେ ବସି ମକ୍‌ଚି ଯାଇଥିବା ଗୋଡକୁ ଲମ୍ବାଇ ଉଜୁଡି ଯାଇଥିବା ପରିବା ଗଛର ପରିବା ଅମୃତଭଣ୍ଡା, ବାଇଗଣ, କଖାରୁ ଇତ୍ୟାଦି କାଟୁଥିଲେ। ଲବଂଗ ପଚାରିଲା ଅପା -ଭାତ ତ ରାନ୍ଧି ସାରିଲିଣି, ସବୁ ପରିବା ପକାଇ ଡାଲମା କରିଦେବି ନା ତରକାରୀ।

ଏବେ ପାଟି ସୁଆଦ କଥା କିଏ ଖୋଜୁଛି, ତୋତେ ଯେଉଁଟା ସୁବିଧା ହେବ କର। ଭଲ ହେବ ତରକାରୀ କରିବା ଝମେଲାରେ ନପଶି ସବୁ ପରିବା ପକାଇ ଡାଲମା କରିଦେ, ନବ ଓ ପିଲାମାନେ ଦିନମାନେ କାମ କରି କରି ଥକି ପଡ଼ିଛନ୍ତି, ମୁଠାଏ ଖାଇ ଶୁଅନ୍ତୁ।

ନାଇଁମ ପିଲା ତିନିଟା ଦିନମାନ ତାଂକ ଦାଦା ଓ ମୋ ସହ କାମରେ ଲାଗିଛନ୍ତି। ତରକାରୀ କରିବାରେ କଷ୍ଟ କ'ଣ ହେବ ଯେ, ଶିଳ ତ ବାରିଦୁଆରେ ପଡିଥିଲା, ସେମିତି ଅଛି, ମୁଁ ମସଲାଟିକିଏ ବାଟି ତରକାରୀ କରିଦେଉଛି, ସମସ୍ତେ ଟିକେ ଶାନ୍ତିରେ ଖାଆନ୍ତୁ।

ରୋଷେଇ ସାରି ପୁତୁରା ଝିଆରୀଙ୍କ ସହ ନବ ପାଇଁ ପରସି ଦେଲା ଲବଂଗ। ସେମାନେ ଖାଇ ସାରିବା ପରେ ନବକୁ କହିଲା - ତମେ ଅପାଂକ କୋଡରୁ ପୁଅକୁ ନିଅ, ଆମେ ଦୁହେଁ ଖାଇ ନେବୁ।

ଗୋଟିଏ ଥାଳିରେ ବସି ଖାଉଥିଲେ ଦୁଇ ଯାଆ ନବ ମନେ ପକାଇ ପାରୁନଥିଲା ଏମିତି ବିରଳ ଦୃଶ୍ୟ ସେ ଜୀବନରେ କେବେ ଦେଖିଥିଲା ବୋଲି। ଗତକାଲି ରାତିରେ ନୂଆଉଁର ସପ୍ତପୁରୁଷ ଉଝାଳୁ ଥିବା ଲବଂଗ ଏମିତି ପରିବର୍ତ୍ତନ ହୋଇଗଲା କେମିତି ? ତା'ଭାବନାର ଅନ୍ତ ନ ହେଉଣୁ ଆଉ ଗୋଟେ ଦୃଶ୍ୟ ଘଟିଲା। ନବ ସହ ପିଲାମାନଂକ ପାଇଁ ଖଟ ଉପରେ ବିଛଣା କରିଦେଇ, ତଳେ ଦି' ଯାଆଂକ ପାଇଁ ବିଛଣା ଲଗାଇଲା। ବିଛଣା ଲଗାଇ ସାରି କହିଲା - ଅପା, ତମେ ଢ଼େର ଥକି ଯାଇଥିବ, ଶୁଅ, ମୁଁ ତମ ଗୋଡକୁ ଆଉ ଥରେ ସେକ ଦେଇ ମାଲିସ୍ କରି ଦେଉଛି।

ଅପା ଗୋଡ଼ରେ ତେଲ ମାଲିସ୍ କରି ଦେଉଁ ଦେଉ ଲବଂଗ କହିଲା - ତମ ଦିଅର ସବୁବେଳେ କୁହନ୍ତି ତମେ ତାଂକ ଭାଉଜ ନୁହଁ ମାଆ ବୋଲି। ଆଜି ମୁଁ ପ୍ରକୃତରେ ଜାଣିଲି ତମେ ତାଂକର କେବଳ ନୁହଁ ଆମ ସମସ୍ତଙ୍କର ମାଆ ବୋଲି। ତମ ଭିତରେ ମାଆର ହୃଦୟ ନଥିଲେ ନିଜ ଜୀବନକୁ ପାଣି ଛଡ଼ାଇ ତମେ କ'ଣ ବଂଚେଇ ପାରିଥାଆନ୍ତ ବବ୍‌ଲୁକୁ?

ନବ ଚାଳ ଫାଙ୍କରେ ଦିଶୁଥିବା ଆକାଶକୁ ଚାହିଁ ଭାବୁଥିଲା- ଇଏ ବାତ୍ୟା ହେଉ ବା ମହାବାତ୍ୟା, ଆମ ଘରର ତ ବେଶି କିଛି କ୍ଷତି କରିନି। ଯାହା ଭାଂଗି ଦେଇଛି, ତା ଠାରୁ ତ ଢ଼େର ଅଧିକ ଯୋଡି ଦେଇଛି। ଆଉ ଦୁଃଖ କ'ଣ ?

***

# ।। ଚିହ୍ନା ଚେହେରାର ଚିତ୍ର ।।

ଖବରକାଗଜରେ ବାହାରିଥିବା ଫଟୋଟି ଲାଗୁଥିଲା ଖୁବ୍ ଚିହ୍ନା -ଚିହ୍ନା । ମାତ୍ର ଖବରର ଶୀର୍ଷକ "ବିଶିଷ୍ଟ ମାଓବାଦୀ ନେତା ଭି.ଅପ୍ପା ରାଓ ଗିରଫ"ରୁ ଏମିତି ଚିହ୍ନା - ଚିହ୍ନା ଲାଗିବାର ସାମାନ୍ୟତମ ସୁରାକ ମଧ୍ୟ ପାଇ ପାରୁନଥିଲି । ଖବରରେ ପ୍ରଦାନ କରାଯାଇଥିବା ବିଶଦ ବିବରଣୀ ମଧ୍ୟ ମୋତେ ସାହାଯ୍ୟ କରି ପାରିନଥିଲା ଚିନ୍ତା କରିବାକୁ ଯେ ଏ ଲୋକଟିର ଫଟୋଟି ମୋତେ କାହିଁକି ଚିହ୍ନିଲା ଚିହ୍ନିଲା ପରି ଲାଗୁଛି ।

ଟି.ଭି. ନିଉଜରେ ମଧ୍ୟ ଦେଖିଲି ସେଇ ଏକା ଖବର । ଫରକ ଥିଲା କେବଳ ନିଉଜ୍ କ୍ଲିପିଂରେ ଅପ୍ପା ରାଓ ବୋଲି ଦେଖାଯାଉଥିବା ଲୋକଟିର ମୁହଁକୁ ଗୋଟେ କଳା କପଡ଼ାରେ ଆବୃତ କରି ରଖାଯାଇଥିଲା । ଫଟୋରୁ ମୁହଁ ଦେଖି ତ ମନେ ପକାଇ ପାରୁ ନ ଥିଲି, ଆଉ ଟି.ଭି.ରେ ମୁହଁ ଢ଼ଙ୍କା ଛବି ଦେଖି ବା କିପରି ମନେ ପକାଇ ପାରିଥାଆନ୍ତି ? ମୁଁ ମନେ ପକାଇ ପାରୁନଥିଲି ସିନା ହେଲେ ମୋତେ ଲାଗୁଥିଲା ମୁଁ ତାକୁ ଚିହ୍ନିଛି ଏବଂ ଖୁବ ଭଲ ଭାବରେ ଚିହ୍ନିଛି ବୋଲି ।

ଖବର କାଗଜରେ ବାହାରିଥିବା ଫଟୋଟି ମୋର ପତ୍ନୀଙ୍କୁ ଦେଖାଇ ପଚାରିଲି - ଦେଖିଲି ଏ ଫଟୋ, ୟାଙ୍କୁ କେଉଁଠି ଦେଖିଛ ବୋଲି ମନେ ପକାଇ ପାରୁଛ କି ?

ମୋ ପତ୍ନୀ ଫଟୋକୁ ଚାହିଁଲେ କିଛି ସମୟ ନିରୀକ୍ଷଣ କରି, ତାଂକ ଚହିଁବାରୁ ମୁଁ ଜାଣୁଥିଲି ସେ ବି ଚିହ୍ନି ପାରୁନାହାନ୍ତି ବୋଲି । ଫଟୋ ଦେଖି ଚିହ୍ନିବାରେ ବିଫଳ ହେବାରୁ ସେ ନିଉଜଟି ପଢ଼ିଲେ । ପଢୁ ପଢୁ କହିଲେ - ମଲା ଇଏ ଜଣେ ମାଓବାଦୀ ନେତା, ମୁଁ କେମିତି ଚିହ୍ନିଥିବି ବୋଲି ତମେ ଭାବିଲ ?

ହଁ ଯେ- ହେଲେ ଫଟୋଟି ଦେଖିବା ବେଳକୁ ମୋତେ ଲାଗୁଛି ଚିହ୍ନିଲା ଚିହ୍ନିଲା ପରି, ହେଲେ ଯେତେ ଚେଷ୍ଟା କରି ବି ମୁଁ ମନେ ପକାଇ ପାରୁନି କେମିତି ଚିହ୍ନିଛି ଏବଂ କେଉଁଠି ଚିହ୍ନିଛି, କାଳେ ତମେ ଏ ରହସ୍ୟ ଭେଦ କରି ପାରିବ ସେଥିପାଇଁ ତମକୁ ପଚାରୁଥିଲି ।

ବୟସ ବଢ଼ିଲେ ଆଲଜାଇମର ହୁଏ - ସ୍ମୃତିର ବିସ୍ମରଣ ଘଟେ। ମାତ୍ର ତମ କ୍ଷେତ୍ରରେ ଇଏ ତ ଓଲଟା ବେମାରୀର ଲକ୍ଷଣ ଦେଖାଯାଉଛି।

ମୋର କ'ଣ ଆଲ୍‌ଜାଇମର ହେବା ଭଳି ବୟସ ହେଲାଣି ?

ମୁଁ କେଉଁଠି କହିଲି ଯେ ତମର ଆଲ୍‌ଜାଇମର ହେଲାଣି ? ମୁଁ ତ କେବଳ କହିଲି ତମକୁ ଏବେ ଆଲଜାଇମ୍‌ରର ଓଲଟା ବେମାରୀ ହେଲାଣି। ସେ ରୋଗ ହେଲେ ସ୍ମୃତି ଭ୍ରଷ୍ଟ ହୁଏ, ଲୋକେ ଚିହ୍ନା ଲୋକଂକୁ ବି ଚିହ୍ନି ପାରନ୍ତି ନାହିଁ। ମାତ୍ର ତମକୁ ତ ଏବେ ସବୁ ଅଚିହ୍ନା ଲୋକ ବି ଚିହ୍ନା ଚିହ୍ନା ଲାଗିଲେଣି। ମନେ ପକାଅ ତ ସେଦିନ ସକାଳୁ ସକାଳୁ ବାଦାମ୍‌ବାଡି ବସ୍‌ଷ୍ଟାଣ୍ଡରେ କି ହୀନସ୍ତା ହେବାକୁ ଯାଉଥିଲ ?

ହୀନସ୍ତା କ'ଣ ମ ? ମୋତେ ଲାଗିଲା ଲୋକଟା ରମଣୀ ବୋଲି।

ଲାଗିଲା ନା ରମଣୀ ବାବୁ ବୋଲି ? ରମଣୀ ବାବୁଙ୍କର ସହ ତମର ଶେଷ ଦେଖା କେତେ ବର୍ଷ ତଳେ ହୋଇଥିଲା ?

ହଁ - ପାଖାପାଖି ତିରିଶ ବର୍ଷ ହେଲାଣି ମୋର ରମଣୀ ସହ ଦେଖା ହୋଇନାହିଁ।

ସେତେବେଳେ ରମଣୀ ବାବୁଙ୍କୁ କେତେ ବର୍ଷ ହୋଇଥିଲା ? କେତେ ବର୍ଷମାନେ ! ମୋତେ ସେତେବେଳେ ଯେତିକି ବର୍ଷ ହୋଇଥିଲା, ତାକୁ ସେତିକି ବର୍ଷ ହୋଇଥିବ, ଆଉ କେତେ ? ମାନେ କୋଡିଏ ବର୍ଷ ତ ?

ହଁ - ସେଇଆ ହବ।

ତମେ କ'ଣ ତମ ନିଜର ତିରିଶ ବର୍ଷ ତଳର ଫଟୋକୁ ଦେଖି ନିଜକୁ ଚିହ୍ନି ପାରୁଛ ?

କି ଅଦ୍‌ଭୁତ କଥା କହୁଛ ? ନିଜ ଫଟୋ ଯେତେ ବର୍ଷ ତଳର ହେଲେ ବି ତାକୁ ନ ଚିହ୍ନିବି କିପରି ?

ତମର ସେବେକା ଫଟୋ ଓ ଅବିକା ଫଟୋର କ'ଣ ସଂପୂର୍ଣ୍ଣ ସାମଞ୍ଜସ୍ୟ ରହିଛି ?

ସେଇଟା କେମିତି ସମ୍ଭବ ହେବ, ସେତେବେଳେ କ'ଣ ମୋର ମୁଣ୍ଡ ଚନ୍ଦା ହୋଇଥିଲା ନା ମୁହଁରେ ଏମିତି ବୟସର ଦାଗ ପଡିଥିଲା। ମୁଁ କ'ଣ ଏମିତି ମୋଟା ଥିଲି ନା ମୋ ପେଟ ଆଗକୁ ବାହାରିଥିଲା।

ଆଚ୍ଛା ତମେ ଯେଉଁ ଲୋକଟାକୁ ରମଣୀ - ରମଣୀ କହି ଚିଲ୍ଲାଇଥିଲ, ତାଂକର ସେଇ ତିରିଶ ବର୍ଷ ତଳର ଚେହେରାକୁ ମନରେ ପକାଇ ତ ?

ହଁ - ସେଇଆ ନୁହଁ ଆଉ କ'ଣ ?

ଆଚ୍ଛା ତିରିଶ ବର୍ଷ ମଧ୍ୟରେ ତମ ଚେହେରାରେ ଯଦି ଏତେ ସବୁ ପରିବର୍ତ୍ତନ ହୋଇଛି,

ତମେ କିପରି ଭାବିଲ ଯେ ତମର ବନ୍ଧୁ ତାଂକର ସେହି କୋଡିଏ ବର୍ଷିଆ ଚେହେରାକୁ ଧରି ସେଇଠି ଅଟକି ରହିଥିବେ ବୋଲି ?

ହଁ ତ - ସତ କଥା।

ରକ୍ଷା ହୋଇଛି କୁହ ସେ ଭଦ୍ରବ୍ୟକ୍ତି ତମକୁ ବିଶେଷ ଅପମାନିତ କରିନାହାନ୍ତି - ବରଂ ଅତି ସଂଯତ ଭାବରେ କହିଲେ ଏମିତି ଚିଲ୍ଲାଇବା ପୂର୍ବରୁ ଭଲ ଭାବରେ ଚିହ୍ନନ୍ତୁ। ତାଂକ କଥାରେ ତମେ ସିନା ଅପମାନିତ ହେଲ ନାହିଁ, ମୋ ମୁହଁ କିଂତୁ ଲାଜରେ ଜଳିଗଲା।

ସେ ଲୋକ ଜଣକ ସିନା ରୋକ୍ ଠୋକ୍ ମନା କରିଦେଲା - ସେ ରମଣୀ ନୁହଁ ବୋଲି, ହେଲେ ବସ୍‌ରୁ ଓହ୍ଲାଇବା ଯାଏଁ ମୁଁ ବିଶ୍ୱାସ କରିପାରୁନଥିଲି ସେ ରମଣୀ ନୁହଁ ବୋଲି। ଏତେ ଅଦ୍‌ଭୁତ ସାମଞ୍ଜସ୍ୟ କ'ଣ ଥାଏ ଦୁଇଜଣଙ୍କର ଚେହେରାରେ ?

ହଉ ଛାଡ଼ ସେ ରମଣୀ ବାବୁଙ୍କ କଥା - ଏ ଲୋକଟାକୁ ତମେ କେଉଁଠି ଦେଖିଛ କହିଲ ?

ସେତକ ଯଦି ମନେ ପକାଇ ପାରୁଥାଆନ୍ତି, ତେବେ ତା' ଫଟୋକୁ ତମକୁ କାହିଁକି ଡାକି ଦେଖାଇ ଥାଆନ୍ତି ?

ଇଏ ତ ଜଣେ ମାଓବାଦୀ ନେତା। ନିଜ ଅସୁସ୍ଥ ପ୍ରେମିକାକୁ ଗୋପନରେ ଚିକିତ୍ସା କରାଇବାକୁ ଆସି ଧରା ପଡିଯାଇଛି ବିଚରା ପୋଲିସ୍ ହାତରେ। ତମେ ୟାଂକୁ କିପରି ଚିହ୍ନିଲ ?

ସେଇ କଥା ତ ଭାବୁଛି।

ଭାବିଲ - ଭାବିଲ ଭଲ କଲ। ଖାଲି ଭାବନା ଭିତରେ ରୁହ, ନଚେତ୍ ୟାଂକୁ ଚିହ୍ନିଛ ବୋଲି ଚିଲ୍ଲାଇଲେ ମାଓବାଦୀଙ୍କ ସହ ସଂପର୍କ ରଖିଛ ବୋଲି ପୋଲିସ୍ ତମକୁ ଗିରଫ କରିବାରେ ଡେରୀ କରିବେ ନାହିଁ। ମୁଁ ଦେଖୁଛି ଇଏ ତମର ଏକ ପ୍ରକାର ପାଗଳାମୀ।

ହଉ - ରମଣୀ କ୍ଷେତ୍ରରେ ସିନା ମୋ ସ୍ମୃତି ଶକ୍ତି ବିଫଳ ମାଇଲା, ହେଲେ ଦେଖିବ ଏ କ୍ଷେତ୍ରରେ ମୁଁ ସଫଳ ହେବି।

କ'ଣ ଚ୍ୟାଲେଂଜ ମାରୁଛ ନା କ'ଣ ?

ନା - ଚ୍ୟାଲେଂଜ ମାରୁନି, ଏଇ ଚିହ୍ନା -ଚିହ୍ନା ଲାଗିବାର ରହସ୍ୟକୁ ଉନ୍‌ମୋଚନ କରିବାକୁ ଏକ ଚ୍ୟାଲେଂଜ ରୂପେ ଗ୍ରହଣ କରୁଛି।

ପତ୍ନୀଙ୍କ ସହ ଯୁକ୍ତିତର୍କରେ ପୂର୍ବରୁ ନେଇଥିବା ବହୁ ଚ୍ୟାଲେଂଜ ପରି ଏ ଚ୍ୟାଲେଂଜଟା ମଧ୍ୟ ପାଣିର ଗାର ସଦୃଶ ହୋଇଥାଆନ୍ତା, ଯଦି ପରବର୍ତ୍ତୀ ସପ୍ତାହରେ ଗୋଟିଏ ଦୈନିକ ଖବରକାଗଜର ସାପ୍ତାହିକୀରେ "ଆପ୍ପା ରାଓର ଅପରାଧର ଚେର" ଶୀର୍ଷକ ଏକ ଅନୁସନ୍ଧାନ ମୂଳକ ଫିଚର ମୋ ଦୃଷ୍ଟି ଗୋଚର ହୋଇନଥାନ୍ତା। ମଟର ସାଇକେଲ ମେକାନିକ୍‌ରୁ

ମାଓବାଦୀ ନେତା ଯାଏ ପ୍ରଲମ୍ବିତ ଯାତ୍ରାର ବିବରଣୀ ପଢୁ ପଢୁ ଖୋଲି ଯାଇଥିଲା ମୋତେ ଚିହ୍ନା -ଚିହ୍ନା ଲାଗୁଥିବାର ରହସ୍ୟ।

ଅପ୍ପା ରାଓ ମଟର ସାଇକେଲ ମେକାନିକ୍। ସେହି ଛୋଟିଆ ସହରଟିରେ ମେକାନିକ୍ ହିସାବରେ ତା'ର ଖୁବ୍ ନାଆଁ ଥିଲା। ତା' ଦୋକାନରେ ଅତି ପୁରୁଣା ପୁରୁଣା ମଟର ସାଇକେଲ, ସ୍କୁଟର ଠାରୁ ଆରମ୍ଭ କରି ନୂଆ ମଟର ସାଇକେଲ ମାନଂକର ଲମ୍ବା ଧାଡି ଲାଗିଥାଏ ସବୁବେଳେ। ଯେହେତୁ ମୋର ଗୋଟେ ମଟର ସାଇକେଲ ଥିଲା ସେହି ସୂତ୍ରରେ ମୋର ତା'ସହ ଚିହ୍ନା ପରିଚୟ ହୋଇଥିଲା। ପ୍ରଥମ ଥର ତା'ପାଖରେ ମୁଁ ପହଂଚିଥିଲି ମୋର ଗାଡି ଷ୍ଟାର୍ଟ ହେଉନଥିଲା ବୋଲି, ଯେହେତୁ ସହରଟି ଛୋଟ ଏବଂ ସେ ସହରର ଏକ ବ୍ୟାଂକ ଶାଖାର ମୁଁ ମୁଖ୍ୟ ଥିଲି, ତେଣୁ ସେ ବୋଧ ହୁଏ ମୋତେ ଚିହ୍ନିଥିଲା, ମୁଁ ପହଂଚିବା କ୍ଷଣି ସେ କରୁଥିବା କାମଟିକୁ ଛାଡ଼ି ଦେଇ ଉଠି ଆସି ମୋ ଗାଡି କାମରେ ଲାଗିଗଲା। ପ୍ଲଗଟିକୁ କାଢ଼ି ସଫା କରି କ'ଣ ଟିକେ ଏପଟ ସେପଟ ଖୁଟଖାଟ୍ କଲାପରେ ଷ୍ଟାର୍ଟ ମାରି ଦୁଇ ଚାରିଥର ଘୁଁ-ଘୁଁ କରି କହିଲା ହୋଇଗଲା ସାର୍। ମୁଁ କୋଡିଏ ଟଂକିଆ ନୋଟଟିଏ ବଢ଼ାଇବାରୁ କହିଲା - କ'ଣ ଯେ କାମ କଲି ଗାଡିର ଆପଣ ମୋତେ ପଇସା ଯାଚୁଛନ୍ତି ? ଯେତେବେଳେ ଗାଡିର କାମ କରିବି ସେତେବେଳେ ଦେବେ। ଗାଡିର ସାଉଣ୍ଡ କହୁଛି ଇଂଜିନ୍ ବୋରିଂ ମାଗିଲାଣି, ହେଲେ ଏବେ ଚଳୁଥାଆନ୍ତୁ ଆହୁରି ଚଳିଯିବ କେତେଦିନ।

ଏମିତି ଗାଡି ସଜଡା ସଜଡି ଯୋଗୁଁ ତାହା ସହ ମୋର ସଂପର୍କ ଘନିଷ୍ଠ ହୋଇଥିଲା, ଥରେ କହିଲା ସାର୍- ଭାବୁଛି ଗାଡି ସଜାଡିବା ସହ ଗାଡିର ଛୋଟ ମୋଟ ପାର୍ଟସ୍ କିଛି ରଖିବି। ଏ ଦୋକାନ ସେ ଦୋକାନ ପଠାଇ ଡୁପ୍ଲିକେଟ ପାର୍ଟସ ଆଣି ଲଗାଇବା ଅପେକ୍ଷା ମୋର ଗ୍ରାହକ ମାନଂକୁ ଅରିଜିନାଲ ପାର୍ଟସ ଦେବି।

ରଖ, ଖୁବ୍ ଭଲ ହେବ।

ରଖିବାକୁ ତ ମନ, ହେଲେ...।

ଟଂକା ଦରକାର ତ ? ହଉ ତମେ ବ୍ୟାଂକକୁ ଆସ, ମୁଁ ତୁମପାଇଁ ଗୋଟେ ଋଣ କରାଇ ଦେବି।

ଅପ୍ପା ରାଓ ଋଣ ନେଲା। ସେ ଯେପରି ଭଲ ମେକାନିକ୍ ଥିଲା ଋଣ ପରିଶୋଧରେ ମଧ ଠିକ୍ ସେହିପରି। ତାରିଖକୁ ତାରିଖ, କିସ୍ତି ପରିଶୋଧରେ କେବେ ହେଳା କରୁନଥିଲା। ବେପାର ଭଲ ଚାଲିବାରୁ ମଝିରେ କେରଳ ଯାଇ ନିଜ ପତ୍ନୀକୁ ଧରି ଆସିଲା ସାଂଗରେ। ମନ୍ଦିର ପଛ ପଟରେ ଗୋଟେ ଦୁଇ ବଖରିଆ ଭଡ଼ା ଘର ନେଇ ରହିଲା। ମୋଟାମୋଟି ତା'ର ସଂସାର ଭଲରେ ଚାଲୁଥିଲା।

ଏନ୍.ବାଳକ୍ରିଷ୍ଣା ଆପ୍ପା ରାଓର ଗାଆଁ ପାଖର ଲୋକ। ଏ ସହରର ମିଶନ ହସପିଟାଲରେ କାମ କରୁଥିଲା ଡ୍ରେସର ଭାବେ। ଗାଆଁ ପାଖର ଲୋକ ବୋଲି ଅପ୍ପା ରାଓର ଘରକୁ ତା'ର ଯିବା ଆସିବା ଥିଲା। ଯିବା ଆସିବାରୁ ଘନିଷ୍ଠତା ବଢ଼ିବା ସହ ତା'ର ଆସକ୍ତି ବଢ଼ିଥିଲା ଆପ୍ପା ରାଓର ପତ୍ନୀ ପ୍ରତି। କ୍ରମଶ ଆସକ୍ତି ଟାଣି ନେଇଥିଲା ଅନୈତିକ ସଂପର୍କ ଆଡକୁ।

ପ୍ରଥମେ ପ୍ରଥମେ ଆପ୍ପା ରାଓ ଏକଥାର ସୁରାକ୍ ପାଇ ପାରିନଥିଲା। ସେ ଘଟଣା ସଂପର୍କରେ ଜାଣିବା ବେଳକୁ ନେଡି ଗୁଡ଼ କହୁଣୀକୁ ବୋହିବା ଆରମ୍ଭ କରିସାରଥିଲା। ବିଚରା ପତ୍ନୀ ପାଇଁ ମର୍ମାହତ ହେଲା, ବିଚଳିତ ହେଲା ଓ କିଛିଦିନ ପାଗଳ ପ୍ରାୟ ହେଲା। କାମ ଦାମରେ ମନ ଦେଲାନି, ଦୋକାନ ବି କମ୍ ଖୋଲିଲା। କିଛି ଦିନ ଗଢ଼ିବାରୁ ଦିନେ ପଚାରିବାରୁ କହିଲା - ଏଇ କିଛି ଦିନ ହେଲା, ଦେହ ଭଲ ନଥିଲା ତ, ବ୍ୟବସାୟରେ ଠିକ୍ ଧ୍ୟାନ ଦେଇ ପାରିନଥିଲି। ଆସନ୍ତା ମାସକୁ ସବୁ ଠିକ୍ ହୋଇଯିବ।

ନିଜ ଭିତରର ବିଚଳତାକୁ ଆଦୌ ବାହାରକୁ ପ୍ରକାଶ ନକରି ଚୁପ୍ ଚାପ୍ ରହି ଗୋଟେ ପ୍ରତିଶୋଧର ଖସଡ଼ା ପ୍ରସ୍ତୁତ କଲା ସିଏ। ଖସଡାର ପ୍ରଥମ କାର୍ଯ୍ୟ ହିସାବରେ କେରଳରୁ ଶଳାକୁ ଡକାଇ ପଠାଇ ଦେଲା ପତ୍ନୀକୁ ଗାଆଁକୁ। ସେତେବେଳେ ବାଳକ୍ରୀଷ୍ଣା କହିଲା - ମୋର ତ ଗାଆଁକୁ ଯିବାର ଅଛି, ଭାଉଜ ରହି ଯାଉନାହାନ୍ତି ମୋ ସାଂଗରେ ଯିବେ। ନିଜ ଯୋଜନା କାଳେ ଫସର ଫାଟିଯିବ ସେଥିପାଇଁ କ୍ରୋଧକୁ ଭିତରେ ଭିତରେ ଚାପି ରଖି ସେ କହିଲା - ଶଳା ତ ଗାଆଁରୁ ଆସି ସାରିଲାଣି, ଯାଆନ୍ତୁ। ତମେ ଗଲାବେଳେ, ମୁଁ ବାହାରିବି ସାଂଗ ହୋଇଯିବା।

ଯୋଜନା ପ୍ରସ୍ତୁତ କରୁଥିଲା ଆପ୍ପା ରାଓ, ରହୁଥିଲା ଗୁମ୍‌ସୁମ୍, ବାହାରକୁ ଶାନ୍ତ ଅଥଚ ଭିତରେ ଆନ୍ଦୋଳିତ। ଯୋଜନାର ଚୂଡାନ୍ତ ପର୍ଯ୍ୟାୟ ଦିନ ସେ ଆସିଥିଲା ବ୍ୟାଂକକୁ। ମୋ ଚ୍ୟାମ୍ବରକୁ ଆସି ପଚାରିଲା - ସାର୍, ଟଂକା କିଛି ଦରକାର ଥିଲା, ମୋର ଲୋନଟାକୁ ବଢ଼ାଇ ହେବିକି ?

କ'ଣ ଦରକାର ପଡିଲା ଟଂକାର ?

ଏମିତି କିଛି ଖାସ୍ ନୁହେଁ, ବହୁଦିନ ହେଲାଣି ଆମ ରାଜ୍ୟକୁ ଯାଇନି ତ, ଏବେ ଯିବି ବୋଲି ବାହାରିଛି। ମିସେସ୍ ଆଗରୁ ଯାଇଛନ୍ତି, ଗଲାମାନେ ନିଜ ଗାଆଁ ସହ ଶଶୁର ଘର ଗାଆଁଆଡ଼େ ଟିକେ ଯିବାକୁ ପଡିବ ତ, ତେଣୁ ଖର୍ଚ୍ଚ ଲାଗିବ।

ହେଲା ଯେ ତମେ ନେଇଥିବା ଋଣଟା କିଛି ଋଣ, ସେଥିରୁ ତ ତମେ ଟଂକା ଉଠାଇ ପାରିବ ନାହିଁ। ହଉ ତମକୁ ଅନ୍ୟ ଏକ ଋଣ କରାଇ ଦେବା।

ଆଜି ହୋଇ ପାରିବନି ସାର୍ ?

ଆଜି ! ଆଜି ତ ଫିଲଡ ଅଫିସର ନାହାନ୍ତି, ସେ ଆସିଲେ ତାଂକୁ କହିବି କରିଦେବେ। କ'ଣ ଆଜି ଯିବା ପାଇଁ ଟିକେଟ କାଟି ଦେଇଛ ନା କ'ଣ ?

ନା - କାଟିନି ଯେ, ମିଳିଯିବ।

ଟିକଟ ମିଳନ୍ତା ନାହିଁ କି, ରିଜରଭେସନ କ'ଣ ମିଳିବ ? ତମେ ପରା କେରଳକୁ ଯିବ, ବିନା ରିଜରଭେସନରେ ଏତେ ବାଟ କିପରି ଯିବ ?

ହଉ ସାର୍, ମୁଁ ରିଜର୍‌ଭେସନ୍ କରି ଦେଉଛି, ଫିଲଡ୍ ଅଫିସର ସାର୍ ଆସିଲେ ରଣ କରିବି।

ଆପ୍ପା ରାଓ ଉଠିଗଲା ଯିବା ପାଇଁ, ହେଲେ ମୋ ମନ କହିଲା ସେ ଏ ବିଳମ୍ବକୁ ଗ୍ରହଣ କରିପାରୁନାହିଁ, ମନେ ମନେ ଭାବିଲି ପତ୍ନୀ ଆଗରୁ ଚାଲି ଯାଇଛି ତ, ସେଥିପାଇଁ ତା' ମନ ବ୍ୟସ୍ତ ହେଲାଣି ଗାଆଁକୁ ଯିବା ପାଇଁ, ବିନା ରିଜରଭେସନ୍‌ରେ ବି କେରଳ ଯାଏ ଯିବାକୁ ଅଣ୍ଟା ଭିଡିଛି।

ପରଦିନ ମୁଁ ସାଢ଼େ ନଅଟା ବେଳେ ଅଫିସ୍ ଆସିବା ବାଟରେ ଦେଖିଲି ଆପ୍ପା ରାଓର ଘର ସାମ୍ନାରେ ଭିଡ଼ ଜମିଛି। ପୋଲିସ୍ ଜିପ୍‌ଟିଏ ମଧ ଥୁଆ ହୋଇଛି ଘର ସାମ୍ନାରେ। କିଛି ଗୋଟେ ଅଘଟଣ ଘଟିଛି ନିଶ୍ଚୟ ଭାବି ଜଣେ ଲୋକକୁ ପଚାରିଲି କ'ଣ ହୋଇଛି କି ?

ମର୍ଡର - ମର୍ଡର।

କାହର ମର୍ଡର ହୋଇଛି ?

ବାଳ କ୍ରୀଷ୍ଣା ରାଓର ମର୍ଡର ହୋଇଛି।

କିଏ କରିଛି ?

କିଏ ଆଉ କରିବ - ଆପ୍ପା ରାଓ ଘରେ ମର୍ଡର ହୋଇଛି, କ'ଣ ବାହାର ଲୋକ ଆସି କରିବେ।

ଆପ୍ପା ରାଓ ଅଛି ସେଠାରେ ?

ମର୍ଡର କରି କ'ଣ କିଏ ରହେ, ସେ କାଲି ରାତିରୁ ଫେରାର। ଗଲା ତ ଗଲା - ମହାନ୍ତି ସାର୍ ତାଂକ ନୂଆ ମଟର ସାଇକେଲଟି ଦେଇଥିଲେ ସର୍ଭିସିଂ କରିବାକୁ, ତାକୁ ଧରି ଫେରାର।

ଚାଲିଲା କିଛି ଦିନ ପୋଲିସ୍‌ର ତନା ଘନା। ତା' ରାଜ୍ୟ କେରଳକୁ ଗଲା ପୋଲିସ୍ ଟିମ୍। ସମସ୍ତ ରେଳ ଷ୍ଟେସନ, ବସ୍‌ଷ୍ଟାଣ୍ଡରେ ପୋଲିସ ଜଗିଲା। ଏହି ଖୋଜା ଖୋଜି ଭିତରେ ଗୋଟିଏ ଜଂଗଲିଆ ରାସ୍ତାରେ ସେ ଛାଡ଼ି ଯାଇଥିବା ମଟର ସାଇକେଲଟି ମିଳିଲା ସିନା ହେଲେ

ଆପ୍ପା ରାଓର କୌଣସି ଖୋଜ ଖବର ମିଳିଲାନି। ଯେହେତୁ ମୃତକ ଓ ଘାତକଙ୍କର ଏଠାରେ କୌଣସି ପରିବାର ଲୋକ ନଥିଲେ କେବଳ କେଶଟିଏ ଫାଇଲ୍ ହୋଇ ପୋଲିସ୍ ଫାଇଲରେ ରହିଗଲା, ଆଉ କିଛି ଆଗେଇ ପାରିନଥିଲା ତଦନ୍ତ।

ଏହା ଭିତରେ ବିତିଗଲାଣି ଦଶବାର ବର୍ଷ। କାର୍ଯ୍ୟ ପରିସରରେ ଆସୁଥିବା ଅନ୍ୟ ସବୁ ଲୋକଙ୍କୁ ଯେମିତି ଭୁଲି ହୋଇଯାଏ, ଠିକ୍ ସେମିତି ଭୁଲି ଯାଇଥିଲି ମୁଁ ଅପ୍ପା ରାଓଙ୍କୁ। ତେଣୁ ଫଟୋଟି ଦେଖିବା କ୍ଷଣି ମୁଁ ଦୋ-ଦୋ ଚିହ୍ନା ହେଉଥିଲି, ତମେ କହୁଛ କ'ଣ ନା ମୋ ମସ୍ତିଷ୍କରେ ଭ୍ରମ ହେଲାଣି, ସ୍ମୃତିର ବିଭ୍ରମ ହେଉଛି।

ତେବେ ଇଏ ନରହତ୍ୟାକାରୀରୁ ମାଓବାଦୀ ପାଲଟି ଯାଇଛି ?

ମୁଁ ଭାବୁଛି ତା' ଆଗରେ ଅନ୍ୟ କୌଣସି ବିକଳ୍ପ ନଥିଲା। ସିଏ ଯୁଆଡ଼େ ଲୁଚିଥିଲେ ବି ଆଇନ୍‌ର ଲମ୍ବା ହାତ ତା' ପାଖରେ ପହଂଚି ତାକୁ କମ୍‌ସେ କମ୍ ଆଜୀବନ କାରାଦଣ୍ଡ କିମ୍ବା ଫାଶୀ ଖୁଣ୍ଟ ପର୍ଯ୍ୟନ୍ତ ଟାଣି ନେଇଥାଆନ୍ତା। ସେଥିରୁ ବର୍ତ୍ତିବା ପାଇଁ ହୁଏତ ସେ ସାମିଲ ହୋଇ ଯାଇଥିବ ମାଓବାଦୀଙ୍କ ସହ।

ହେଲେ ଏବେ ତ ଧରା ପଡିଲା ?

ଧରାପଡୁ, ଏବେ ତ ତାକୁ ଆଉ ଖୁଣୀ ଆସାମୀ ବୋଲି କେହି କହିବେ ନାହିଁ, କହିବେ ମାଓବାଦୀ ନେତା। ମଣିଷ ମାରିଛି ବୋଲି ସିଏ ଜେଲ୍ ଯାଉନି, ଜେଲ୍ ଯାଉଛି ଶୋଷିତ ବର୍ଗଙ୍କ ତ୍ରାଣକର୍ତ୍ତା ସାଜି ବ୍ୟବସ୍ଥା ବିରୁଦ୍ଧରେ ସଂଗ୍ରାମ କରିଥିବାରୁ। ମଟରସାଇକେଲ ମେକାନିକ୍ ଆପ୍ପା ରାଓ ଓ ମର୍ଡରର ଆପ୍ପାରାଓକୁ କିଏ ଜାଣିଥାଆନ୍ତା ସେ ମାଓବାଦୀ ନ ହୋଇ ଥିଲେ ?

***

# ।। ବିପ୍ରଲବ୍ଧ ।।

ସନ୍ଧ୍ୟା ହେଲାଣି। କଳାହାଣ୍ଡିଆ ମେଘ ଖଣ୍ଡେ ପାହାଡ଼ ପରି ଲଦି ହୋଇଛି ପଶ୍ଚିମ ଆକାଶରେ। କେଉଁ ମୁହୂର୍ତ୍ତରେ ବର୍ଷି ଯିବ କିଏ ଜାଣେ! ଏ ଛୋଟିଆ ସହରରୁ ସନ୍ଧ୍ୟାବେଳେ ଆଉ ବସ୍ ଥିବ କି ଭୁବନେଶ୍ୱର ଯିବା ପାଇଁ? ସୁମନ୍‌କୁ ଅଟକାଇ ଦେବ କି ଆଜି ରାତିକ? ହଷ୍ଟେଲ ବାଉଣ୍ଡରୀ ବାହାରେ ତ ଗେଷ୍ଟ ହାଉସଟିଏ ଅଛି, ଅନ୍ୟ ଝିଅମାନଙ୍କ ଅଭିଭାବକମାନେ ଆସିଲେ ତ ରହୁଛନ୍ତି ସେଠାରେ, ସୁମନ୍ ସେଠାରେ ରାତିଟିଏ ରହିଗଲେ କ୍ଷତି କ'ଣ? ଏ ଛୋଟ ସହରଟିରେ ନାଁ କୌଣସି ଲଜ୍ ଅଛି ଯେ ସେ ସୁମନ୍‌କୁ କହି ପାରିବ ଯେ ଏ ମେଘ ଘୋଟା ସନ୍ଧ୍ୟାରେ ନ ଯାଇ ଲଜ୍‌ରେ ରହିଯିବା ପାଇଁ।

ସମୟ ଓ ପାଗକୁ ବେଖାତିର କରି ସୁମନ ଗପି ଚାଲିଥିଲେ ଅସରନ୍ତି ଗପ। ତାଂକ ଗପକୁ କାନ ଦେଇଥିଲେ ମଧ ତାଂକୁ ଅଟକାଇବା କି ନଅଟକାଇବା ଦ୍ୱନ୍ଦରେ ମନସ୍ଥ ହୋଇପାରୁନଥିଲା ସ୍ମୃତି। ସେ ଜାଣି ପାରୁନଥିଲା ଯେ ଗପ ନହସରେ କେତେବେଳେ ସେମାନେ ଡେଇଁ ସାରିଲେଣି ହଷ୍ଟେଲ ଗେଟ୍ ଓ ପହଂଚି ଗଲେଣି ରାସ୍ତା କଡ଼ରେ। ଏଇଠୁ ସ୍ମୃତି ଫେରିଯିବା ଉଚିତ୍ ଭାବି ଯେତେବେଳେ ସୁମନ୍ କହିଲେ ଗପୁ ଗପୁ ତମେ ଢ଼େର ବାଟ ଚାଲି ଆସିଲଣି, ତମେ ଏଇଠୁ ଫେରିଯାଅ, ମୁଁ ଆସୁଛି।

ସ୍ମୃତିର ପାଟିରୁ ବାହାରି ଆସୁଥିଲା - ସନ୍ଧ୍ୟା ହୋଇଗଲାଣି, ମେଘ ବି ଘୋଟିଛି, ରାତିଟା ଏଠାରେ ରହିଯାଆନ୍ତୁ, ବାହାରୁ ବାହାରୁ ଓଠ ପାଖରେ ରହିଗଲା। ଡାହାଣ ହାତକୁ ସାମାନ୍ୟ ଉଠାଇ - ବାଏ କହି ସାମାନ୍ୟ ଜୋର୍‌ରେ ଆଗକୁ ପାଦ ପକାଇଲେ ସୁମନ୍।

ଧୀରେ ଧୀରେ ମାଛି ଅନ୍ଧାର ଭିତରେ ଦୃଶ୍ୟରୁ ଅଦୃଶ୍ୟ ହେଉଥିଲେ ସୁମନ୍। ସଂପୂର୍ଣ୍ଣ ଅଦୃଶ ହେବା ପୂର୍ବରୁ ଥରେ ପଛକୁ ଫେରି ଚାହିଁଲେ। ସ୍ମୃତି ଭାବିଲା ତାଂକୁ ହାତଠାରି ଡାକି ଅଟକାଇ ଦେବ କି? ହାତ ଠାରିବା ଉଦ୍ଦେଶ୍ୟରେ ସେ ହାତ ଉପରକୁ ଉଠାଇଲା, ହେଲେ ସୁମନ୍ ଭାବିଲେ ସେ ତାଂକୁ ଟା-ଟା କରୁଛି, ତେଣୁ ପୁନଃ ହାତଟି ଉଠାଇ ସେ ଗତିକୁ କ୍ଷିପ୍ରତର

କଲେ। ଏହି ସମୟରେ ବିଜୁଳି ସହ ଘଡଘଡିଟିଏ ମାରିଲା। ସେ ଶବ୍ଦରେ ଚହଲି ଗଲା ସ୍ମୃତିର ଅସ୍ତିତ୍ୱ। ତାକୁ ଖାସ୍ ଭେଟିବାକୁ ଏତେ ବାଟ ଧାଇଁ ଆସିଥିବା ସୁମନ୍‌କୁ ରାତିଟିଏ ପାଇଁ ଆତିଥ୍ୟ ଦେଇ ନ ପାରିବାର ଅବଶୋଷରେ ବୁଡ଼ିଗଲା ସ୍ମୃତି।

ଧୀରେ ଧୀରେ ଅଦୃଶ୍ୟ ହୋଇ ଅନ୍ଧାରରେ ସଂପୂର୍ଣ୍ଣ ମିଳାଇ ଯିବା ପର୍ଯ୍ୟନ୍ତ ସୁମନ୍‌ଙ୍କ ଫେରନ୍ତା ସିଲହାଉଟି ଆଡ଼େ ଚାହିଁ ରହିଥିଲା ସ୍ମୃତି। ସେ ସ୍ଥିର ଓ ସ୍ଥାଣୁ ହୋଇ ଠିଆ ହୋଇଥିଲେ ମଧ୍ୟ ଭିତରେ ଥିଲା ଗଭୀର ଉଦ୍‌ବେଳନ। ସନ୍ଧ୍ୟା ଯାଇ କେତେବେଳେ ରାତି ହୋଇଗଲା ଜଣାପଡିଲାନି ତାଂକୁ। ମେଘ ଫାଙ୍କରୁ ଉଂକି ମାରୁଥିବା ଜହ୍ନକୁ ଦେଖି ଆଶ୍ୱସ୍ତ ହେଲା ଯେ ମେଘ ଭାଂଗି ଗଲା ବୋଧେ। ଗୋଟେ ଅନ୍ୟମନସ୍କ ଭାବ ନେଇ ହଷ୍ଟେଲକୁ ଫେରି ଆସିଲା ପରେ ମଧ୍ୟ ଅସ୍ଥିରତା କଟୁ ନ ଥିଲା ଭିତରୁ। ଭିତରର ଉଦ୍‌ବେଳନ ଶୁଆଇ ଦେଲା ନାହିଁ, ଉଠି ବସିଲା। ଉଠି ପଡ଼ି ପଦ୍ମାସନ ମୁଦ୍ରାରେ କୋଳ ଉପରେ ତକିଆ ଦେଇ, ଗାଲରେ ହାତ ଦେଇ ଭାବିଲା – ତମ ସହ ଇଏ ମୋର ପ୍ରଥମ ସାକ୍ଷାତ ଥିଲାନା ? ଦେଖ ତ ପ୍ରଥମ ସାକ୍ଷାତରେ ମୁଁ ତୁମକୁ ରାତିଟିଏ ପାଇଁ ଆତିଥ୍ୟ ଦେବାରେ ଅସମର୍ଥା ହେଲି, ଯଦି ଆମର ସଂପର୍କ ସତ୍ୟ ହୁଏ ତେବେ ମୁଁ ତୁମକୁ ସାରାଜୀବନ ଆତିଥ୍ୟ ଦେଇ ପାରିବି କିପରି ?

ପ୍ରଥମ ସାକ୍ଷାତ ! କିଏ କହିଲା ଇଏ ଆମର ପ୍ରଥମ ସାକ୍ଷାତ ବୋଲି ? ତମକୁ ଦେଖିଲା କ୍ଷଣି ଏତେ ଆପଣାର ଲାଗିଲ ଯେ ମୋତେ ଲାଗିଲା ମୁଁ ଯେମିତି ତମକୁ ଜନ୍ମ ଜନ୍ମ ହେଲା ଚିହ୍ନିଛି। ମୋର ଇଛା ହେଉଥିଲା – ତମେ ଆଜି ରାତିରେ ଏଠାରେ ରହିଥାଆନ୍ତ, ଆମେ ସାରା ରାତି ଜହ୍ନ ଓ ତାରାଂକ ଗପ ଶୁଣି ଥାଆନ୍ତେ ଏବଂ ମୁଁ ଗୀତ ଗାଇ ଗାଇ ତମକୁ ଶୁଆଇ ଦେଇ ଥାଆନ୍ତି। ହେଲେ ସେ ସୌଭାଗ୍ୟ ମୋର କାହିଁ ଯେ ? ଗୀତ ଗାଇ ଶୁଆଇ ଦେବା ତ ଦୂରର କଥା, ତମକୁ ରାତି ହେଲାଣି ରହିଯାଅ କହିବାକୁ ମଧ୍ୟ ମୋ ଓଠ ସ୍ଫୁରିଲା ନାହିଁ।

ଜାଣ ସୁମନ୍, ତମର ଚିଠି ସବୁ ପଢ଼ି ମୁଁ ତୁମକୁ ଯେତିକି ସୁନ୍ଦର ପୁରୁଷ ବୋଲି ଭାବୁଥିଲି, ତମେ ପ୍ରକୃତରେ ତା'ଠାରୁ ଢ଼େର ଅଧିକ ସୁନ୍ଦର। କିଂତୁ ଚିଠିରେ ଚିଠିରେ ମୁଁ ତୁମକୁ ଯେତିକି କଥା କହି ପାରୁଥିଲି, ତମକୁ ଦେଖିବା ପରେ ହଠାତ୍ ସବୁ କେମିତି ବ୍ୟତିକ୍ରମ ହୋଇଗଲା। ତମର ରହଣୀ ମୁହୂର୍ତ୍ତ ସମୟତକ ମୁଁ ତ ଥରଟିଏ ପ୍ରଗଳଭା ହେବାର ସ୍ପର୍ଦ୍ଧା ରଖି ପାରିଲି ନାହିଁ, କେବଳ ପାଲଟି ଗଲି ତମ କଥାକୁହା ଶୈଳୀର ବିମୁଗ୍ଧା ଶ୍ରୋତାଟିଏ।

ତମର କଥା କହିବାର ଶୈଳୀକୁ ତାରିଫ୍ ନକରି ରହି ହେଉନାହିଁ। ଇଏ ଆମ ପ୍ରଥମ ସାକ୍ଷାତ ନା, ଅଥଚ ତମେ କେତେ ସ୍ୱାଭାବିକ ଢ଼ଙ୍ଗରେ ଆରମ୍ଭ କରିଦେଲ କଥାବାର୍ତ୍ତା ! ମୋ କଲେଜ, ତମ ଚାକିରି, ଏକା ଏକା ନିଃସଂଗ ଜୀବନର ଅନୀୟମିତ ଜୀବନ ଧାରା, ତମ ଚାକିରି ସ୍ଥାନର ଜଳବାୟୁ ଓ ଜନଜୀବନ, ଚାକିରିର ବ୍ୟସ୍ତତା ତମକୁ କିପରି ଧୀରେ ଧୀରେ

ଲେଖା ଲେଖି ଠାରୁ ଦୂରେଇ ଦେଉଛି, ଏସବୁକୁ ତମେ ଯେପରି ଚମତ୍କାର ଗଳ୍ପ ଶୈଳୀରେ ପ୍ରକାଶ କରୁଥିଲ, ଇଚ୍ଛା ହେଉଥିଲା ତମେ ଏଇମିତି ଗପୁଥାଆନ୍ତ କି ଯୁଗ ଯୁଗ ଧରି ଏବଂ ମୁଁ କାନ ଡେରି ଶୁଣୁଥାଆନ୍ତି କୃଷ୍ଣଙ୍କ ବଂଶୀ ସ୍ୱନକୁ ରାଧା କାନ ଡେରିଲା ପରି।

ତମ ଗପ ତ ମୋତେ ଭଲ ଲାଗୁଥିଲା ସତ, ହେଲେ ମୁଁ ଭିତରେ ଭିତରେ ଉଚ୍ଛକିତ ଥିଲି ତମଠାରୁ ଶୁଣିବା ପାଇଁ ଅସଲ କଥାଟିକୁ। ହେଲେ ଏତେ ସମୟ ଗପିବା ପରେ ମଧ୍ୟ ତମେ ଅସଲ କଥାକୁ ନଆସୁ ଥିବାରୁ ମୋର ଧୈର୍ଯ୍ୟ ଚ୍ୟୁତି ଘଟୁଥିଲା। ମୁଁ ମନେ ମନେ ଭାବୁଥିଲି ତମେ ଏତେ ବାଟ ଆସିଛ କ'ଣ ଏଇ ଗପ ଗପିବାକୁ? ନା - ଏତେ ବାଟ ଯାହାକୁ ଦେଖିବାକୁ ଆସିଥିଲ ତାକୁ ଦେଖିବା ପରେ ତମର ସ୍ୱପ୍ନଭଂଗ ହେବାରୁ ତମେ ଗପର ମୋଡ ବଦଳାଇ ଯାଉସ୍ୟାଉ ଗପି ସମୟ କାଟିଦେବାର ଚକକରରେ ଥିଲ?

ଯଦି ବି ତୁମର ସ୍ୱପ୍ନଭଂଗ ହୋଇଥାଏ ତେବେ ସେଥିପାଇଁ ମୁଁ ତୁମକୁ କେବେ ଦୋଷ ଦେଇପାରିବିନି ସୁମନ। ଅନେକଥର ତମେ ଚିଠିରେ ଲେଖିଛ ମୋର ଫଟୋଟିଏ ପାଇଁ, ହେଲେ ସବୁଥର ତାକୁ ମୁଁ ଜାଣି ଜାଣି ଭୁଲି ଯାଉଥିଲି। ତା'ର କାରଣ କ'ଣ ଜାଣ? ତମ ଫଟୋ ପାଇବା ପରେ ମୋ ନିଜ ଚେହେରା ମୋତେ ଶତ୍ରୁ ପରି ଲାଗିଲା, ହେଲେ ମୁଁ ମୋର ମୋହ ଭାଂଗି ପାରୁନଥିଲି ତମ ପ୍ରେମରୁ। ସବୁ ପୁରୁଷ କ'ଣ କେବଳ ବାହ୍ୟ ରୂପର ସ୍ତାବକ, କିଏ ତ ଜଣେ ଥିବ ଯିଏ ଭଲ ପାଇ ପାରୁଥିବ ମୋର ଅନ୍ତଃରୂପକୁ। ସେହି ଜଣକ ତମେ ବା କାହିଁକି ନ ହୋଇ ପାରିବ ଭାବି ଭାବି ତମ ସହ ଥରେ ସାକ୍ଷାତର ସୁଯୋଗକୁ ଅପେକ୍ଷା କରୁଥିଲି।

ଆଜି ତମ ସହ ସାକ୍ଷାତ ହେଲା, ଏହା ମୋର ବହୁ ଜନ୍ମର ଭାଗ୍ୟର ଫଳ। ଏ ସାକ୍ଷାତର ଫଳ ଆମ, ନା ଆମ କହିଲେ ହୁଏତ ଭୁଲ ହୋଇପାରେ, ବରଂ ମୋ ସ୍ୱପ୍ନକୁ କେତେଦୂର ଆଗେଇ ନେଇ ପାରିବ ତାହା ଦେଖିବାର କଥା। ଯଦି ବି ସ୍ୱପ୍ନଭଂଗ ହୋଇଯାଏ, ଏକଥା ନିଶ୍ଚିତ ଯେ ମୁଁ ଭାଂଗି ପଡିବି ନାହିଁ। ଏଥିପାଇଁ ମୋର ପ୍ରଥମରୁ ମାନସିକ ପ୍ରସ୍ତୁତି ନଥିଲେ ମଧ୍ୟ, ଏଇ ଅଳ୍ପଦିନ ତଳେ ଗୋଟେ ନାଟକ ଶୁଣିବା ପରେ  ମାନସିକ ପ୍ରସ୍ତୁତି କରି ନେଇଛି। ସେ ନାଟକଟି କ'ଣ ଜାଣ? ଜଣେ ଆଜନ୍ମ ଅନ୍ଧ। ଈଶ୍ୱର ଗୋଟିଏ ପଟୁ କିଛି କାଟି ଦେଲେ ଆଉ ଗୋଟେ ପଟେ ତା'ର ଭରଣା କରନ୍ତି। ଦୃଷ୍ଟିଶକ୍ତି ନଥିଲେ ମଧ୍ୟ ତା' ସ୍ୱରରେ ଥିଲା ଚମତ୍କାର ଯାଦୁ। ଏହାକୁ ତମେ ଐଶିପ୍ରତିଭା କିମ୍ବା ଈଶ୍ୱରଙ୍କ ବରଦାନ ବି କହିପାର। ସାମାନ୍ୟ ହାରମୋନିୟମ୍‌ଟିଏ ଧରି ସେ ଯେତେବେଳେ ଗୀତ ଗାଉଥିଲା, ଗଛପତ୍ର ଆକାଶର ମେଘ, ପବନ ସମସ୍ତେ ହେଉଥିଲେ ସ୍ଥିର। ପଶୁପକ୍ଷୀ ବି ଉଚ୍ଛକିତ ଓ ଆନମନା ହେଉଥିଲେ। ତା' ଗୀତ ଶୁଣି କୌଣସି ନାରୀ ତା' ପ୍ରେମରେ ପଡିଯିବାଟା ବିଚିତ୍ର ନଥିଲା। ପ୍ରେମରେ ପଡିଲେ

ବି ଜଣେ ନାରୀ। ଯିଏ ପ୍ରେମରେ ପଡିଲେ ତାଂକ ଭିତରେ ଥିଲା ନିଃସର୍ତ୍ତ ଭଲ ପାଇବା ଏବଂ ଅନ୍ଧ ବୋଲି ଆଖ୍ୟାତ ଥିବା ଶିଳ୍ପୀଟିକୁ ଦୁନିଆଁ ଆଖିରେ ପରିଚିତ କରାଇବା। ସେ ତା'ର ସମସ୍ତ ଶକ୍ତି ଓ ସାମାର୍ଥ୍ୟ ଦେଇ ଅନ୍ଧ ଶିଳ୍ପୀଟିକୁ ନେଇ ପହଂଚାଇଲେ ଜଣେ ପ୍ରଖ୍ୟାତ ଗୁରୁଙ୍କ ପାଖରେ। ଉଦ୍ଦେଶ୍ୟ ଥିଲା, ସ୍ୱରଟି ସିନା ଅଛି ତାକୁ ତାଳ ଓ ଲୟ ଦେଇ ଉଚ୍ଚାଙ୍ଗ ସଂଗୀତ ସାଧନା ପାଇଁ ଉପଯୁକ୍ତ କରି ଗଢ଼ି ତୋଳିବା। ଐଶୀପ୍ରତିଭାର ଅଧିକାରୀ ସେ ଅନ୍ଧଶିଳ୍ପୀ ଜଣଂକୁ ସେ ସବୁ ସଂଗୀତଜ୍ଞାନକୁ ଆୟତ୍ତ କରିବାକୁ ବି ଲାଗିନଥିଲା ବେଶି ଦିନ।

ଧୀରେ ଧୀରେ ରାସ୍ତା କଡ଼ରୁ ଶିଳ୍ପୀଟି ଉଠିଲେ ମଞ୍ଚ ଉପରକୁ। ମଞ୍ଚରୁ ଆକାଶବାଣୀ ସ୍ୱରର ଯାଦୁରେ ତନ୍ମୟ ଓ ବିମୁଗ୍ଧ କଲେ ଶ୍ରୋତାଂକୁ। ଆସିଲା ଅର୍ଥ, ଆସିଲା ଯଶ ଓ ଖ୍ୟାତି। ଝିଅଟି ଛାଇ ଭଳି ରହିଥାଏ ଅନ୍ଧ ଶିଳ୍ପୀଟି ସାଥୀରେ। ବଂଚିବାର ସଂଗ୍ରାମ ସରିଗଲେ ମଣିଷ ସ୍ୱପ୍ନ ବିଳାସୀ ହୁଏ। ସେ ଅନ୍ଧଶିଳ୍ପୀଟି ମଧ ହେଲେ, ସେଥିରେ କୌଣସି ବିଚିତ୍ରତା ନଥିଲା। ମାତ୍ର ସେ ସ୍ୱପ୍ନ ବିଳାସୀ ହେଲାକ୍ଷଣି ହୋଇ ପଡନ୍ତି ବିଷାଦଗ୍ରସ୍ତ। ତାଂକର ବିଷାଦର କାରଣ ଜାଣିବାକୁ ଚେଷ୍ଟା କରେ ଝିଅଟି। ଅନ୍ଧଶିଳ୍ପୀଟି କେବଳ କହନ୍ତି - ଯାହା ଜାଣି ତମେ କିଛି କରିପାରିବ ନାହିଁ, ତାକୁ ଜାଣିବାର ଆଗ୍ରହ ଦେଖାଅନି।

ଥରେ ଥରେ ବିଷାଦ ବଢ଼ିଗଲେ ଶିଳ୍ପୀ ଜଣକ ସେ ଝିଅଟିକୁ ପ୍ରଶ୍ନ କରେ - ଏ ପୃଥିବୀ ବହୁତ ସୁନ୍ଦର ନା ? ଏ ପୃଥିବୀ ଉପରେ ଗୋଟେ ଆକାଶ କ'ଣ ସତରେ ଅଛି ? ଆକାଶରେ କ'ଣ ଦିନ ବେଳେ ସୂର୍ଯ୍ୟ ଓ ରାତିରେ ଜହ୍ନ ତାରା ଦେଖା ଦିଅନ୍ତି ? ସୂର୍ଯ୍ୟଙ୍କୁ ତ ମୁଁ ଅନୁଭବ କରି ପାରୁଛି, ହେଲେ ଜହ୍ନ ତାରା କ'ଣ ଜାଣି ପାରୁନି। ସତରେ କ'ଣ ଏ ପୃଥିବୀ ସୁନ୍ଦର ନଦ, ନଦୀ, ଝରଣା, ପାହାଡ଼ ପର୍ବତ ଓ ଜଂଗଲରେ ଭରା ? ପକ୍ଷୀମାନଂକର କ'ଣ ସୁନ୍ଦର ପର ଓ ଫୁଲମାନଂକର ସୁନ୍ଦର ରଂଗ ଅଛି ? ଅନ୍ୟ ଜୀବଜନ୍ତୁ, ପଶୁପକ୍ଷୀ ସମସ୍ତଙ୍କର ଆକ୍ଷି ଅଛିନା ? ଯଦି ଈଶ୍ୱର ଏତେ ନଗଣ୍ୟ ଜୀବଙ୍କୁ ଆକ୍ଷି ଦେଇ ପାରିଲେ ଏସବୁକୁ ଦେଖିବା ପାଇଁ, ତେବେ ମୋ ପ୍ରତି କୃପଣ ହେଲେ କାହିଁକି ?

ଝିଅଟି ବୁଝି ପାରିଲା ଅନ୍ଧ ଶିଳ୍ପୀ ମନର ଦୁଃଖ। ସେତେବେଳକୁ ସେ ତା' ପ୍ରେମରେ ଏମିତି ଉବୁଟୁବୁ ଯେ ପ୍ରେମକୁ ସଫଳ କରିବାକୁ କୌଣସି ଜିନିଷକୁ ସେ ଅଲଂଘ୍ୟ କିମ୍ବା ଅପୂରଣୀୟ ରଖିବାକୁ ଚାହୁଁ ନଥିଲା। ଦେଖାଇଛି ଡାକ୍ତର, ପରୀକ୍ଷା କରାଇଛି ଆକ୍ଷି। ଚକ୍ଷୁ ରୋପଣ ହେଲେ ଦେଖିପାରିବାର ସମ୍ଭାବନା ଅଛି ଜାଣିବା ପରେ ସେ ପ୍ରସ୍ତୁତ ହୋଇଛି ନିଜର ଗୋଟିଏ ଚକ୍ଷୁ ପ୍ରଦାନ କରିବାକୁ, ଯାହା ଫଳରେ ସେମାନେ ଉଭୟ ଦେଖିପାରିବେ।

ଚକ୍ଷୁ ରୋପଣ ପରେ ଅନ୍ଧଶିଳ୍ପୀଟି ଦେଖିଛି ଦୁନିଆଁ ଦେଖିଛି ତାକୁ ପ୍ରାଣଦେଇ ଭଲପାଉଥିବା ପ୍ରେମିକାକୁ ଓ ତାହାର ତ୍ୟାଗକୁ। ହେଲେ ନୂଆ ନୂଆ ଆକ୍ଷି ପାଇ ଦୁନିଆକୁ

ଦେଖୁଥିବା ଅନ୍ଧଟିର ସୁନ୍ଦର ବସ୍ତୁ ଦେଖିବାର ମୋହ ବଢ଼ିଛି । ସେ ଦେଖୁଥିବା ସୁନ୍ଦରୀ ନାରୀଙ୍କ ସହ ତୁଳନା କରିଛି ନିଜର ପ୍ରେମିକାକୁ । ଆଖି ନଥିବା ବେଳେ ଯିଏ ତାକୁ ଦିବ୍ୟା ଲାଗୁଥିଲା ଧୀରେ ଧୀରେ ସେ ପାଲଟି ଯାଇଛି ତା' ପାଇଁ ଅଲୋଡ଼ା ଓ ଅପାଂକ୍ତେୟ । ସୁନ୍ଦର ମୋହରେ ସେ କ୍ରମଶଃ ଦୂରେଇ ଯାଉଛି ଝିଅଟିର ପ୍ରେମରୁ ଓ ଜୀବନରୁ ।

ଯଦି ତୁମର ଏମିତି ମାନସିକ ଅବସ୍ଥା ଆସେ ତେବେ ମୁଁ ତୁମକୁ ଦୋଷ ଦେବିନି ସୁମନ୍, ଦୋଷ ଦେବି ମୋ ନିଜକୁ । ମୋର ବା ସେ ତ୍ୟାଗ କାହିଁ ଯେ ମୁଁ ଏତେ ବଡ଼ ପ୍ରତିଦାନଟିଏ ତମ ଠାରୁ ଆଶା କରି ଅପ୍ରାପ୍ତିଜନିତ ଅବଶୋସରେ ଘାରି ହେବି । ତମ ସହ ସଂପର୍କ ଯୋଡିବାର ମାଧ୍ୟମ ଥିଲା ସାହିତ୍ୟ । ତମର ଗୋଟିଏ ଗପ ପଢ଼ି ସାଧାରଣ ପାଠକୀୟ ମତାମତଟିଏ ମୁଁ ଦେଇଥିଲି । ସେ ଚିଠିର ପ୍ରତ୍ୟୁତ୍ତର ଦେଇଥିଲ ତମେ । ବାସ୍, ସେତିକିରେ ତ କଥା ସରିବାର ଥିଲା । ମାତ୍ର ମୋ ଭିତରେ ଭଲ ପାଇବାର କୋମଳ ଇଚ୍ଛାଟି ମୋତେ ବାରମ୍ବାର ପ୍ରେରୀତ କରିଥିଲା ତମ ପାଖକୁ ଚିଠି ଲେଖିବାକୁ । ଏମିତି ଚିଠି ଲେଖୁ ଲେଖୁ ଏ ସଂପର୍କ ଏତେ ବାଟ ଆଗେଇ ଯାଇଛି । ଚିଠିରେ ଚିଠିରେ ମୁଁ ଯେତିକି ପାଇଛି ତାହା କ'ଣ କମ୍ ଯେ ମୁଁ ତୁମ ଉପରେ ଅଭିମାନ କରିପାରିବି ? କେବଳ ଚିଠି ଭିତରେ ଦୁଇଟି ଅଦେଖା ଆତ୍ମା ପରସ୍ପରର ଏତେ ନିବିଡ଼ ଓ ଆପଣାର ହୋଇ ପାରିବା ମଧ୍ୟ ଛୋଟିଆ ପ୍ରାପ୍ତିଟିଏ ନୁହଁ । ଏତିକି ସ୍ମୃତିକୁ ସାଇତି ପାରିଲେ ତ ସାରାଜୀବନ ବଂଚିବାର ପୁଂଜି ହୋଇ ପାରିବ । ତେଣୁ ମୁଁ ଦୁଃଖ କାହିଁକି କରିବି ସ୍ୱପ୍ନ ଯଦି ସତ ନ ହୁଏ ।

ତମେ ଏଇନେ କ'ଣ ବସ୍‌ଷ୍ଟାଣ୍ଡରେ ଅପେକ୍ଷା କରିଥିବ ତମ ସହରକୁ ଯାଉଥିବା ବସ୍‌କୁ ନା ଆଉ ଯିବା ପାଇଁ ବସ୍ ନାହିଁ ଜାଣିବା ପରେ ରାତିଟା କେଉଁଠି କଟାଇବ ବୋଲି ଚିନ୍ତା କରୁଥିବ ? ଯଦି ବସ୍ ପାଇ ଯାଇଥାଅ, ତେବେ ବସ୍ ଭିତରେ ବସି କ'ଣ ଭାବୁଥିବ ସୁମନ୍ ? ଚିଠିରେ ଚିଠିରେ କଳ୍ପନା କରିଥିବା ଝିଅଟି ଓ ସଚକ୍ଷୁରେ ଦେଖିଥିବା ଝିଅଟି ଭିତରେ କେତେ ଫରକ ତାର ତୁଳନା କରୁଥିବ ନା ଆଉ କିଛି ? ହେଲେ ବିଶ୍ୱାସ କର ସୁମନ୍, ମୁଁ ତୁମର ଭାବାବେଗକୁ କେତେଦୂର ଛୁଇଁଛି ଜାଣେନା, ମାତ୍ର ତମେ ମୋର ଆତ୍ମାକୁ ତମେ ତମେମୟ କରିସାରିଲଣି, ଏବେ କେବଳ ଭାବୁଛି ଯଦି ସ୍ୱପ୍ନଭଂଗ ହୁଏ ମୁଁ ବଂଚିବି କେମିତି ?

ରୁମ ଭିତରେ ସ୍ଥିର ହୋଇ ବସିବା ସମ୍ଭବ ହେଲାନି ସ୍ମୃତି ପକ୍ଷରେ । ରୁମ୍‌ରୁ ବାହାରକୁ ବାହାରିଲା । ବାହାରେ ବହଳ ଅନ୍ଧାର । ମନକୁ ମନ ଭାବିଲା ଏହା ଭିତରେ ରାତି ଏତେ ହୋଇଗଲାଣି ନା ? ହଷ୍ଟେଲର କରିଡୋରରେ ଧୀରେ ଧୀରେ ଚାଲିଲା । ପାୱାର କଟ୍, ରୁମ୍ ସବୁ ଅନ୍ଧାର । ଅଳ୍ପ କେତୋଟି ରୁମ୍‌ରେ ଝିଅମାନେ ମହମବତୀ ଜାଳି ଆସନ୍ତାକାଲିର ଟିଚିଂ ପାଇଁ ପ୍ରସ୍ତୁତ ହେଉଛନ୍ତି । ଟ୍ରେନିଂ ନେଉଥିବା ଜଣେ ବୟସ୍କା ଶିକ୍ଷୟତ୍ରୀ ତାଂକର ଘର, ସ୍ୱାମୀ

ଓ ପିଲାଂକ ବିଷୟରେ ଗପୁଥିଲେ। ପିଲା ଦୁଇଟାଂକ କଥା ତାଂକର ଭାରି ମନ ପଡୁଛି। ସେମାନଂକ ଅଝଟରେ ଶାଶୁ କିପରି ବ୍ୟସ୍ତ ହେଉଥିବେ। ମନ ମାନୁନି ଜମା ଏଠି ରହିବାକୁ। କାଲି ଟିଚିଂ ସରିଲେ ମ୍ୟାଡ଼ାମଙ୍କୁ କହି ସେ ଘରକୁ ଚାଲିଯିବେ। ସ୍ମୃତି ତା' କଥା ଶୁଣି ମନେ ମନେ ହସିଲା। ଭାବିଲା ସତରେ ଚାକିରିର ମୋହ ସ୍ୱାମୀ ଓ ପିଲାମାନଂକ ଠାରୁ କେମିତି ଦୂରେଇ ରଖୁଛି ଏ ସ୍ତ୍ରୀ ଲୋକମାନଂକୁ। ଯଦି ତା'ର ସ୍ୱପ୍ନ ସତ ହୁଏ, ତେବେ ତ ତାକୁ ବି ଦିନେ ନା ଦିନେ ଏମିତି ଅବସ୍ଥା ଭୋଗିବାକୁ ପଡିବ ?

ଆଉ ଟିକେ ଆଗକୁ ଚାଲିଲା ସ୍ମୃତି। ଅନ୍ଧାରୁଆ ରୁମ୍ ଭିତରେ ଦୁଇଜଣ ଛାତ୍ରୀ କଥା ହେଉଥିଲେ - ଯିଏ ଆଜି ସ୍ମୃତି ମ୍ୟାଡାମ୍‌ଙ୍କୁ ଭେଟିବାକୁ ଆସିଥିଲେ ସେ ତାଂକର କ'ଣ ହେବେ ? ପ୍ରଶ୍ନଟି ଶୁଣୁଥିବା ଛାତ୍ରୀଟି କିଛି ଉତ୍ତର ଦେବା ପୂର୍ବରୁ ଲାଇଟ୍ ଚାଲିଆସିଲା। ମ୍ୟାଡାମଙ୍କୁ ଦୁଆର ମୁହଁରେ ଦେଖି ପକାଇ ଦୁହେଁଯାକ ହୋଇପଡିଲେ ଅପ୍ରତିଭ। ସ୍ମୃତି ଭିତରକୁ ପଶିଯାଇ ପଚାରିଲେ - ପାଠ ପଢ଼ା ପଢ଼ି ଚାଲିଛି ନା ଖାଲି ଗପସପ ? ତରତର ହୋଇ ଝିଅଟି ନୋଟ୍ ଖାତା ଖୋଲାଇ ପକାଇ କହିଲା - ନା; ମ୍ୟାଡାମ୍ ପଢ଼ା ପଢ଼ି ଚାଲିଛି। ରେବତୀ ଗଳ୍ପ ଉପରେ ଆମର ଆଲୋଚନା ଚାଲିଥିଲା। ମୁଁ ୟାକୁ ପଚାରୁଥିଲି - ରେବତୀର ଆବେଗ ପ୍ରତି ବାସୁଦେବର ପ୍ରତିକ୍ରିୟା କ'ଣ ? ସେ କହିପାରିଲାନି ତ, ସେ ବିଷୟରେ କଥା ହେଉଥିଲୁ। ମ୍ୟାଡାମ ରେବତୀର ଆବେଗ ପ୍ରତି ବାସୁଦେବର କୌଣସି ପ୍ରତିକ୍ରିୟା ଥିଲା କି ?

ପ୍ରଶ୍ନଟି ଏତେ ସହଜ ମନେ ହେଲା ନାହିଁ ସ୍ମୃତିକୁ। କିଛି ସମୟ ଚିନ୍ତା କଲା ପରେ କହିଲା - ହଉ ପରେ ମୁଁ ଏ ବିଷୟରେ କହିବି।

ପ୍ରଶ୍ନଟି କଥା ଚିନ୍ତା କରି କରି ନିଜ ରୁମକୁ ଚାଲିଗଲା ସ୍ମୃତି। ରୁମ୍‌ରେ ପହଂଚିଛି କି ନାହିଁ ପୂଝାରୀ ଡାକିଲା - ମ୍ୟାଡାମ୍ ଖାଇବେ ଆସନ୍ତୁ। ତାକୁ ଦେହ ଭଲ ନାହିଁ କହି ଦେଇ କବାଟ ବନ୍ଦ କରି ରୁମର ଲାଇଟ୍ ଲିଭାଇ ଦେଲା। ଜିରୋ ପାୱାର ବଲ୍‌ବଟି ଜଳାଇ, ତକିଆଟିଏ କାନ୍ଥ କଡ଼କୁ ନେଇ ଆଉଜି ବସି ଚିନ୍ତା କଲା - ସତରେ ରେବତୀର ଆବେଗ ପ୍ରତି ବାସୁଦେବର ପ୍ରତିକ୍ରିୟା କ'ଣ ଥିଲା ? ସମଗ୍ର ଗପରେ ତ ରେବତୀ ପାଟି ଖୋଲିନି, ତା'ର ଆବେଗ ଥିଲା ବୋଲି ଜାଣିବ ଜଣେ କେମିତି ? ପ୍ରଶ୍ନ ସହ ଗଳ୍ପଟିକୁ ଯେତେ ଗଭୀର ଭାବରେ ମନେ ପକାଉଥିଲେ ମଧ୍ୟ ଏ ପ୍ରଶ୍ନର ଉତ୍ତର ଖୋଜି ପାଉନଥିଲା ସ୍ମୃତି। ଉତ୍ତରଟିଏ ଖୋଜୁ ଖୋଜୁ ତା' କାନ ପାଖରେ ଶୁଭି ଯାଉଥିଲା ସେହି ଛାତ୍ରୀ ଦୁଇଜଣଙ୍କ କଥା - ଆଜି ଯିଏ ମ୍ୟାଡାମଙ୍କୁ ଭେଟିବାକୁ ଆସିଥିଲେ ସେ ମ୍ୟାଡାମଙ୍କର କ'ଣ ହେବେ ?

ତମେ ମୋର କ'ଣ ହେବ ସୁମନ୍ତ ? ରେବତୀ ପରି ମୁଁ ତ ଏଯାଏଁ କହି ପାରିନି ଶବ୍ଦଟିଏ। ମୋର ଆବେଗ ପାଇଁ ତମର ପ୍ରତିକ୍ରିୟା କ'ଣ ସୁଜିତ୍ ? କୁହ - କ'ଣ ତମର

ପ୍ରତିକ୍ରିୟା ? ତମେ କୁହ କି ନକୁହ, ମୋତେ ଲାଗୁଛି ଏ ପ୍ରଶ୍ନଟି ମୋତେ ଆଣି ଠିଆ କରାଇ ଦେଇଛି ଏକ ଅପରିପ୍ରକାଶ ଆବେଗରେ ମଝି ଦରିଆରେ। ଯେଉଁଠି ଚାହିଁଲେ ଥଳ ପାଇଁ କୂଳ ଦିଶୁନି, ଦିଶୁଛି କେବଳ ସମୁଦ୍ର ଓ ଆକାଶର ମିଳନର ଦିଗ୍‌ବଳୟ। ମୋ ନିଜ ପ୍ରଶ୍ନ ନିଜକୁ ପଚାରି ପଚାରି ଦିଗ୍ ବଳୟ ଆଡକୁ ଯେତେ ଧାଇଁ ଧାଇଁ ଗଲେ ବି ଦିଗ୍‌ବଳୟ ଦୂରରୁ ଦୂରତର ହେଉଛି। ମୋ ନିଜ ପ୍ରଶ୍ନ ଯେତେବେଳେ ମୋ ନିଜକୁ ଅବୁଝା, ମୁଁ ସେମାନଂକ ପ୍ରଶ୍ନର କି ଉତ୍ତର ବା ଦେବି ?

ତମେ କୁହ ସୁମନ - ତମେ ମୋର କ'ଣ ହେବ ?

* * *

# ॥ ସର୍ବାଶେଷ ଶତ୍ରୁ ॥

କମ୍ୟୁନିଟି ସେଣ୍ଟରର ପାଖ ପାର୍କରେ ମର୍ଣ୍ଣିଂୱାକ୍ କଲାବେଳେ ମୁଁ ପ୍ରାୟତଃ ଦେଖେ ସେ ଲୋକଟିକୁ। ତାଙ୍କୁ ଦେଖିବା କ୍ଷଣି ମୁହଁଟି ଲାଗେ ମୋତେ ଚିହ୍ନା ଚିହ୍ନା। ସେ ମୁହଁଟି ମୋତେ କାହିଁକି ଚିହ୍ନା ଚିହ୍ନା ଲାଗୁଛି। ଯେତେ ଚେଷ୍ଟା କରି ମଧ୍ୟ ସେ କଥାର ପ୍ରହେଳୀକୁ ମୁଁ ବୁଝି ପାରେନ। ତମାମ୍ ମର୍ଣ୍ଣିଂୱାକ୍ ସମୟ ମୁଁ ଏ ଚିହ୍ନା ରହସ୍ୟକୁ ଉନ୍‌ମୋଚନ କରିବାକୁ ମୋର ସ୍ମୃତି ସ୍ନାୟୁଙ୍କୁ ନିୟୋଜିତ କରିଦିଏ ସିନା, ହେଲେ ମୋ ସ୍ମୃତିର ପରିଧିରେ କେବେ ବି ଧରା ଦିଏନା ସେ ରହସ୍ୟ। ନିଜ ଭିତରର ଦ୍ୱନ୍ଦ ପାଇଁ ମୋର ଭ୍ରଷ୍ଟ ହୋଇଯାଏ ମର୍ଣ୍ଣିଂୱାକ୍। ସେଥିପାଇଁ ଅନେକ ଥର ଭାବିଛି, ଏତେ ଦ୍ୱନ୍ଦରେ ରହିବା ଅପେକ୍ଷା ତାଂକ ପରିଚୟଟା ପଚାରି ଦେଲେ କ୍ଷତି କ'ଣ ? ପରମୁହୂର୍ତ୍ତରେ ଭାବିଛି – ନା, ଏଇଟା ମୋର ସ୍ମୃତି ଶକ୍ତି ପାଇଁ ଏକ ଚ୍ୟାଲେଂଜ। ପ୍ରଥମେ ମନେ ପକାଇସାରେ, ତା'ପରେ ପଚାରିବି।

ହଠାତ୍ ଦିନେ ବ୍ୟାଂକ ଭିତରେ ତାଂକ ସହ ମୋର ମୁହାଁ ମୁହିଁ ଭେଟ ହେଲା। ସେ ମୋତେ କିଛି ଗୋଟେ କହିବା କହିବା ଭାବ ନେଇ ଚାହିଁଲେ ଓ ମୁଁ ମଧ୍ୟ ଚିହ୍ନିବା ଚିହ୍ନିବା ଭାବ ନେଇ ତାଂକ ମୁହଁକୁ ଦେଖିଲି। ପର ମୁହୂର୍ତ୍ତରେ ଭାବିଲି – ନା, ଇଏ ମୋ ମନର ଦ୍ୱନ୍ଦ ଜନୀତ ସମସ୍ୟା। ଯେହେତୁ ମୁଁ ଟଂକା ଉଠାଇବା ପାଇଁ ତରବରରେ ଥିଲି, ତେଣୁ ସେଠି ଆଉ ସମୟ ନଷ୍ଟ ନକରି ମୋ ପାଶ୍ ବୁକ୍ ଓ ଚେକଟି ବାହାର କରି କ୍ୟାଉଣ୍ଟରରେ ଅପେକ୍ଷା କଲି ଟଂକା ପାଇଁ। କିଛି ସମୟ ପରେ ଦେଖିଲି ସେ ଛିଡା ହୋଇଛନ୍ତି ମୋ ପଛରେ। ତାଂକୁ ମୋ ପଛରେ ଠିଆ ହୋଇଥିବାର ଦେଖି ମୁଁ ଅନ୍ୟମନସ୍କ ହୋଇ ପଡିଲି ସତ ଅଥଚ ଧ୍ୟାନ ଦେଇଥିଲି କ୍ୟାସ୍ ଗଣୁଥିବା କ୍ଲର୍କଟି ଉପରେ।

ମୁଁ କ୍ୟାସ୍ ଧରି ପଛକୁ ମୁହଁ ମୋଡିବା କ୍ଷଣି ସେ ମୋତେ ପଚାରିଲେ - ମୋତେ ଟିକେ ଦୟା କରି ସାହାଯ୍ୟ କରିପାରିବେ ?

ସାହାଯ୍ୟ ! କି ପ୍ରକାର ସାହାଯ୍ୟ ?

ଦେଖନ୍ତୁ ମୁଁ ଜଣେ ରିଟାୟାର୍ଡ ଡିଫେନ୍ସ ପର୍ସନ। ମୋର ଗୋଟେ ଏକ୍ୟାଉଣ୍ଟ ଖୋଲିବାର ଅଛି ପେନ୍ସନ୍ ପାଇଁ, ତେଣୁ ଟିକିଏ ଇଣ୍ଟ୍ରୋଡ୍ୟୁସ୍ କରିଦେବେ ?

ଇଣ୍ଟ୍ରୋଡ୍ୟୁସ୍ କରିଦେବା କଥା ଶୁଣି ମୁଁ ମନେ ମନେ ପ୍ରମାଦ ଗଣିଲି। ଆଜିକାଲି କିଏ କେତେ ପ୍ରକାରର ଫ୍ରଡ କରୁଛନ୍ତି, ଇଣ୍ଟ୍ରୋଡ୍ୟୁସ୍ କରି ମୁଁ ଅଯଥା ଝମେଲାରେ ପଡିବି। ମୁଁ କିଛି ନକହି ଗୁମ୍ ରହିବାରୁ ସେ ମୋର ମନୋଭାବକୁ ଠିକ୍ କରି ପଢ଼ିନେଲେ। ତାଂକର ସମସ୍ତ କାଗଜପତ୍ର, ଡିଫେନ୍ସର ଆଇ-କାର୍ଡ, ପ୍ୟାନ୍ କାର୍ଡ ଇତ୍ୟାଦି ଦେଖାଇଲେ। ତାଂକ କାଗଜ ପତ୍ର ଦେଖି ତାଂକୁ ଆଉ ସନ୍ଦେହ କରିବାର କିଛି ନଥିଲା, ତେଣୁ ଇଣ୍ଟ୍ରୋଡ୍ୟୁସର ହେବାକୁ ରାଜି ହୋଇଗଲି।

ମୁଁ ରାଜି ହେବାକ୍ଷଣି ସେ କହିଲେ - ବାଇଦି ୱେ, ଆଇ ଆମ ସତୀଶ ପଟ୍ଟନାୟକ। ମୋ ଘର ଓଡ଼ିଶାର ଯାଜପୁରରେ, ଆର୍ମିରୁ ରିଟାୟାର୍ଡ କଲି ଲକ୍ଷ୍ନୌରେ। ରିଟାୟାର୍ଡ ପୂର୍ବରୁ ଝିଅ ଆସି ଏଠାରେ ଚାକିରୀ କଲା, ସେଣ୍ଟ୍ରାଲ ସ୍କୁଲରେ ଟିଚରସିପ୍। ଗାଆଁରେ ତ ଆଉ କେହି ନାହାନ୍ତି, ତେଣୁ ରିଟାୟାର୍ଡ ପରେ ଏଇଠି ରହି ଯାଇଛି। ଆପଣଂକ ପରିଚୟ ଜାଣି ପାରେ କି ?

ମୁଁ ଅରବିନ୍ଦ ଦାସ। ଘର ଭଦ୍ରକରେ। ମୁଁ ଏଠାରେ ଇଂଜିନିୟର ଅଛି ଲକ୍ଷ୍ନୌ ଡେଭେଲପ୍‌ମେଣ୍ଟ ଅଥରିଟିରେ।

ତାହାଲେ ଆପଣ ବି ଜଣେ ଓଡ଼ିଆ ଲୋକ। ବଢ଼ିଆ ସଂଯୋଗ।

ମୁଁ ତାଂକୁ ଇଣ୍ଟ୍ରୋଡ୍ୟୁସ୍ କଲି, ସେ ଏକ୍ୟାଉଣ୍ଟ ଖୋଲିଲେ। କାମ ସରିବା ପରେ କୃତଜ୍ଞତା ପ୍ରକାଶ କରି କହିଲେ - କିଛି ଯଦି ନ ଭାବନ୍ତି, କେବେ ଥରେ ବୁଲି ଆସନ୍ତୁ ଆମ ଘର ଆଡ଼େ। ମୁଁ ଅମିନାବାଗ୍‌ରେ ରହୁଛି। ଗୋଟିଏ ଭିଜିଟିଂ କାର୍ଡ ମୋ ହାତକୁ ବଢ଼ାଇ ଦେଇ କହିଲେ - ଏଇଟି ମୋ ଠିକଣା। ଦୟାକରି ଆପଣଂକ ଠିକଣାଟା ଦେବେ କି କହି ସେ ଛୋଟ ଟିପାଖାତାଟିଏ ବାହାର କଲେ ମୋ ଠିକଣା ଲେଖିବା ପାଇଁ। ମୁଁ ତାଂକ ହାତକୁ ମୋର ଭିଜିଟିଂ କାର୍ଡଟିଏ ବଢ଼ାଇ ଦେଲି। ମୋ କାର୍ଡଟିକୁ ଟିପା ଖାତା ଭିତରେ ସଯତ୍ନରେ ରଖି ପୁନଃ ଅନୁରୋଧ କଲେ ନିଶ୍ଚୟ ଆସିବେ ଘର ଆଡ଼େ।

ମୁଁ ନିଶ୍ଚୟ ଯିବି ବୋଲି ପ୍ରତିଶ୍ରୁତି ଦେଇ, ଯେହେତୁ ଅଫିସ୍ ଯିବାକୁ ତରତବର ହେଉଥିଲି, ତାଂକ ଠାରୁ ବିଦାୟ ନେଲି।

ନିତିଦିନ ଘଟୁଥିବା ଅନ୍ୟ ସବୁ ବହୁ ସାଧାରଣ ଘଟଣା ଓ ଅନେକ ଜଣଂକୁ ଯିବାର ପ୍ରତିଶ୍ରୁତି ଦେଇ ଭୁଲି ଯାଇଥିବା ପରି ମୁଁ ଭୁଲିଯାଇଥିଲି ସେ ଘଟଣାକୁ। ହଠାତ୍ ଦିନେ ଟେଲିଫୋନ୍ କଲ୍‌ଟିଏ ପାଇଲି ସତୀଶ ବାବୁଙ୍କ ଠାରୁ। ସେ ଟେଲିଫୋନରେ ତାଂକର ଯଥେଷ୍ଟ ପରିଚୟ ଦେବାପରେ ମଧ ମୋତେ ଅନେକ ସମୟ ଲାଗିଲା ତାଂକୁ ଚିହ୍ନିବା ପାଇଁ। ଚିହ୍ନିବା ପରେ ଲଜ୍ଜିତ ହେବା ଭଳି କହିଲି - ମୁଁ ଭୁଲିଯାଇନି ନୁହେଁ, ବ୍ୟସ୍ତତା ମଧ୍ୟରେ ଯାଇପାରିନି, ମାତ୍ର ୟା' ଭିତରେ ନିଶ୍ଚୟ ଯାଇ ଆପଣଂକ ଘରେ ପହଂଚିନି।

ୟା'ଭିତରେ କାହିଁକି ? ଆଜି ଆସୁନାହାନ୍ତି, ଆଜି ତ ରବିବାର, ଆପଣଙ୍କର ଛୁଟି।

ତାଂକର ଆନ୍ତରିକତା ହେଉ ବା ନିଜ ଘର ପାଖରେ ଲୋକଙ୍କୁ ଭେଟିବାରେ ମୋ ଭିତରେ ଥିବା ଆଗ୍ରହ ପାଇଁ ହେଉ କହିଲି ଠିକ୍ ଅଛି ଆଜି ଆପଣଂକ ଘରେ ପହଂଚିବି।

କେତେବେଳେ ଆସିବେ ?

ଆପଣ କେତେବେଳେ ଫ୍ରି ଅଛନ୍ତି କୁହନ୍ତୁ, ମୁଁ ସେ ସମୟରେ ଯାଇ ପହଂଚିବି।

ଆରେ ମୁଁ ତ ରିଟାୟାର୍ଡ ଲୋକ, ସବୁବେଳେ ଫ୍ରି। ତେବେ ଆପଣ ଆଜି ସନ୍ଧ୍ୟାରେ ଆସନ୍ତୁ। ଠିକଣା ମନେ ରଖିଛନ୍ତି ନା ଭୁଲି ଯାଇଛନ୍ତି ?

ନା - ନା, ଭୁଲିନି, ଆପଣଂକ କାର୍ଡ ବି ମୋ ପାଖରେ ଅଛି।

ତେବେ ମୁଁ ଆପଣଂକ ଅପେକ୍ଷାରେ ରହିଲି।

ସନ୍ଧ୍ୟାବେଳେ ପହଂଚିଲି ତାଂକ ଘରେ। ଗୋଟେ ଛୋଟ ଧରଣର ପାର୍ଟି ପାଇଁ ସାଜସଜ୍ଜା ହେଲା ଭଳି ଲାଗୁଥିଲା ତାଂକ ଡ୍ରଇଂ ରୁମ୍। ସୋଫା ଉପରେ ବସୁ ବସୁ ପଚାରିଲି - ଆଜି କ'ଣ କିଛି ବିଶେଷ ଫଂକ୍ସନ୍ ଅଛିକି ?

ନା, ବିଶେଷ ଫଙ୍କସନ୍ ନୁହେଁ ମୋ ନାତୁଣୀର ଜନ୍ମଦିନ। ହେଲେ ଯେହେତୁ ଆମେ ତା' ଜନ୍ମଦିନକୁ ସଂପୂର୍ଣ୍ଣ ନିରାଡମ୍ବର ଭାବେ ପାଳନ କରୁ, ସେଥିପାଇଁ ଆପଣଂକୁ ଡାକିଲା ବେଳେ ମୁଁ କହିପାରିଲି ନାହିଁ ଫ୍ୟାମିଲି ଧରି ଆସିବେ ବୋଲି। ତା'ପରେ ଫ୍ୟାମିଲି ଧରି ଆସିବା କଥା କହି, ଡାକିବାର ଉଦ୍ଦେଶ୍ୟ କହିଥିଲେ, ଆଜିକାଲି ଯେଉଁ ପ୍ରକାରର ଉପହାର ଆଦାନ ପ୍ରଦାନ ଚାଲିଛି, ସେମିତି ଏକ ସ୍ଥିତିରେ ଆପଣଂକୁ ପକାଇ ତଣ୍ଡିବାକୁ ମୁଁ ଚାହିଁ ନଥିଲି। ଆପଣ ପ୍ରଥମେ ଥରେ ବୁଲିଗଲେ ପରେ କେବେ ଫ୍ୟାମିଲି ଧରି ଆସିବାକୁ ଅନୁରୋଧ କରିବି ବୋଲି ଭାବିଥିଲି।

ମୋର ଫ୍ୟାମିଲି ନାହିଁ, ମୁଁ ବ୍ୟାଚେଲର।

ଓହୋ - ବ୍ୟାଚେଲରେ ଅଛନ୍ତି ! କ'ଣ ଏଠି ଏକା ରହୁଛନ୍ତି ?

ନା - ମାଆ ସାଂଗରେ ରହୁଛନ୍ତି।

ହଉ - ଆପଣ ଟିକିଏ ବସନ୍ତୁ, ମୁଁ ଦେଖେ ଝିଅ କ'ଣ ସବୁ ବ୍ୟବସ୍ଥା କରୁଛି, ତା ଝିଅର ଜନ୍ମଦିନ ପାଇଁ।

ମୁଁ ମନେ ମନେ ଅପଦସ୍ତ ଅନୁଭବ କରୁଥିଲି ଯେ ଗୋଟେ ପିଲାର ବାର୍ଥ ଡେ'କୁ ଆସିଛି, ଅଥଚ ହାତରେ କିଛି ଧରିନି ବୋଲି। ପୁଣି ମନକୁ ବୁଝାଇଲି ଯେ ସେ'ତ ମୋତେ କିଛି କହି ନଥିଲେ, ମୁଁ ବା ଜାଣି ଥାଆନ୍ତି କିପରି ? ବସୁ ବସୁ ଘର ଭିତରର ସବୁ ଜିନିଷକୁ ଦେଖୁଥାଏ। ଏପଟ ସେପଟ ଦେଖୁ ଦେଖୁ ନଜରରେ ପଡିଲା ଫଟୋଟିଏ। ଫଟୋଟି ଦେଖି ମୁଁ ହଠାତ୍ ଚମକି ପଡ଼ିଲି। ମୁଣ୍ଡରେ ମିଲିଟାରୀ କ୍ୟାପ ସହ ଏହି ଫଟୋଟିକୁ ବହୁବାର ଆଗରୁ ଦେଖିଥିଲା ପରି ଲାଗିଲା। ମୁଁ ଫଟୋଟି ଉଠାଇ ଦେଖୁ ଦେଖୁ ଭଦ୍ରବ୍ୟକ୍ତି ପଶି ଆସିଲେ ଡ୍ରଇଂ ରୁମ୍‌କୁ। ତାଂକୁ ଦେଖି ପଚାରିଲି - ଏ ଫଟୋଟି କାହାର ?

ମୋର, ଆଉ କାହାର।

ମୁଁ କଥା ଚଳାଇବାକୁ ଯାଇ କହିଲି - ଆପଣଂକର ଏବେକା ଚେହେରାକୁ ଦେଖିଲେ, ଏ ଫଟୋଟି ଯେ ଆପଣଙ୍କର ଜାଣି ହେଉନି। ତା'ପରେ ମୁଁ ଆପଣଂକୁ କେବେ ଟୋପି ଦେବା ଅବସ୍ଥାରେ ଦେଖି ନାହିଁ ତ, ତେଣୁ ଚିହ୍ନି ପାରୁନଥିଲି।

ହଁ - ବୟସ ସହ ତାଳ ଦେଇ ଚେହେରା ବି ବଦଳି ଯାଏ, ତେଣୁ ଚିହ୍ନି ପାରିବେ କିପରି।

ଫଟୋଟି ନେଇ ମୁଁ ଦ୍ୱନ୍ଦର ବୁଢ଼ିଆଣୀ ଜାଲରେ ଛନ୍ଦି ହୋଇ ପଡୁଥିବା ବେଳେ ଡ୍ରଇଂ ରୁମ୍ ଭିତରକୁ ପଶି ଆସିଲେ ତାଂକ ଝିଅ। ମୋତେ ଦେଖି ପକାଇ ସେ ହତବିମ୍ବ ହୋଇ ଚାହିଁଲେ କିଛିକ୍ଷଣ। ତାଂକର ବିସ୍ମୟ ଚାହାଁଣୀ ଦେଖି ସତୀଶ ବାବୁ କହିଲେ - ଏ ହେଉଛନ୍ତି ଇଂ ଅରବିନ୍ଦ ଦାସ। ଏଠି ଲକ୍ଷ୍ନୌରେ ଅଛନ୍ତି। ବ୍ୟାଂକରେ ମୋତେ ଇଣ୍ଟ୍ରୋଡ୍ୟୁସ କରିଥିବାରୁ ଚିହ୍ନା ପରିଚୟ। ତାଂକୁ ବହୁଥର କହିବା ପରେ ଆଜି ଆସିଛନ୍ତି।

ସ୍ଥାଣୁ ଅବସ୍ଥାରେ ଥିବା ସୁନୀତା ହାତ ଉଠାଇଲେ ନମସ୍କାର ପାଇଁ, ମୁଁ ବି ପ୍ରତି ନମସ୍କାର ଜଣାଇଲି।

ସତୀଶ ବାବୁ କହିଲେ - ଯା' ମାଆ, ସ୍ମୃତିକୁ ଡାକିଆଣ। ସେ କେକ୍ କାଟୁ।

ସୁନୀତା ଚାଲିଗଲେ ଭିତରକୁ। ମୋତେ ଲାଗିଲା ଯେମିତି ସ୍ଥିର ହୋଇ ଯାଉଛି ସମଗ୍ର ପୃଥିବୀ ଅଥଚ ମୁଁ ଘୁରି ବୁଲୁଛି ଖୁବ୍ ଜୋରରେ। ସେ ଘୂର୍ଣ୍ଣନ ଭିତରେ ସ୍ମୃତି - ସଜଳ ହୋଇ ଉଠୁଥିଲା ହଜିଯାଇଥିବା ଅତୀତ। ମୋର ସରିଯାଇଥାଏ ଇଂଜିନିୟରିଂ ପରୀକ୍ଷା ଓ ସୁନୀତାର ବି.ଏସ୍.ସି. ପରୀକ୍ଷା। ମୋର ଅପେକ୍ଷା ଥାଏ ରେଜେଲଟ୍ ବାହାରିବାକୁ। ଅଳ୍ପଦିନ ପରେ ପରସ୍ପର ଠାରୁ ବିଚ୍ଛିନ୍ନ ହୋଇଯିବାର ଭୟରେ ଆମେ ଉଭୟ ବେଶୀ ବେଶୀ ସମୟ କାଟୁଥିଲୁ

ବୁଲା ବୁଲିରେ। ଦିନେ ସନ୍ଧ୍ୟାରେ ବୁଲୁବୁଲୁ ମୁଁ ପ୍ରସ୍ତାବ ଦେଲି - ଚାଲ ଆଜି ଗୋଟେ ଲଜ୍‌ରେ ରହିଯିବା, ସାରା ରାତି ମନଭରି ଗପିବା।

ସୁନୀତା ପ୍ରଥମେ ପ୍ରଥମେ ମୃଦୁ ପ୍ରତିବାଦ କରିଥିଲା, କିଂତୁ ମୋର ବାଧ୍ୟବାଧକତାରେ ଶେଷକୁ ହଁ ଭରିଲା। କେବଳ କହିଲା ଦେଖ ଆଉ କିଛି ବଦମାସୀ କଲେ ବାପାଂକ ବନ୍ଧୁକ ଅଛି।

ଗୋଟେ ରାତି ପରେ ଦିନ, ତା'ପରେ ଗୋଟେ ରାତି କେମିତି କଟିଗଲା ଆମେ ଉଭୟ ଜାଣି ପାରିଲୁ ନାହିଁ। ଲଜ୍‌ରୁ ବାହାରିବା ବେଳକୁ ଆମକୁ ଲାଗୁଥିଲା ଯେମିତି ଆମେ ନୂଆ କରି ପହଂଚିଛୁ ଏ ପୃଥିବୀରେ ଏବଂ ପୃଥିବୀ ଲାଗୁଥିଲା ଖୁବ୍ ରଂଗୀନ୍ - ରଂଗୀନ୍।

ପରୀକ୍ଷା ଦେଇସାରି ସୁନୀତା ଚାଲି ଯାଇଥିଲା ଘରକୁ ଏବଂ ମୋର ରେଜଲଟ୍ ବାହାରିବା ପରେ ପରେ ମୁଁ ଚାକିରୀ ପାଇଗଲି ଲକ୍ଷ୍ନୌରେ। ଚାକିରୀରେ ଜଏନ୍ କରିସାରି ମୁଁ ଚିଠି ଦେଇଥିଲି ସୁନୀତାର ଘର ଠିକଣାରେ। ଚିଠିଟି ଅନ୍‌ଡେଲିଭରଡ ହୋଇ ଫେରିଆସିଲା ମୋ ପାଖକୁ। ବାରମ୍ବାର ଲେଖିଛି ଚିଠି, ହେଲେ ସବୁ ଚିଠି ଫେରିଆସିଲା। ଶେଷରେ ଘଟଣା କ'ଣ ଜାଣିବାକୁ ପହଂଚିଲି ତାଂକ ଗାଆଁରେ। ଗାଆଁରେ ତାଂକର ସଂପର୍କୀୟ କେହି ନଥିଲେ। ପଡ଼ିଶା ଘରଠାରୁ ଯାହା ଶୁଣିଲି ଯେ ହଠାତ୍ ହାର୍ଟଆଟାକ୍‌ରେ ସୁନୀତାର ମାଆଂକର ମୃତ୍ୟୁ ହେବାରୁ ସୁନୀତାର ବାପା କ୍ରିୟାକର୍ମ ପରେ ତାକୁ ନେଇଯାଇଥିଲେ ସାଂଗରେ, ଚେଷ୍ଟା କଲି ଠିକଣା ଜାଣିବାକୁ, ସ୍ଥାନର ନାଆଁ ସିନା ଜାଣି ପାରିଲି ହେଲେ ସଂପୂର୍ଣ୍ଣ ଠିକଣା ନୁହଁ। ଶୁଣାଶୁଣିରେ ଯେଉଁ ଠିକଣା ଆଣିଥିଲି ସେ ଠିକଣାରୁ ଚିଠି ଫେରିଆସିଲା। ମୋ ଭିତରେ ତଥାପି ବିଶ୍ୱାସ ଥିଲା ଯେ ସୁନୀତା ତ ଆମ ଗାଆଁ ଠିକଣା ଜାଣିଛି, ସେ ନିଶ୍ଚୟ ସେହି ଠିକଣାରେ ଚିଠି ଦେବ।

ମୋ ଅନୁମାନ ମିଥ୍ୟା ନଥିଲା। ସୁନୀତା ଚିଠି ଲେଖିଥିଲା ଗାଆଁ ଠିକଣାରେ। ବୋଉ ଚିଠିଟି ନଖୋଲି ସେମିତି ରଖିଦେଇଥିଲା ତା'ଆଳିମାଳିକା ପେଟରାରେ। ଭୁଲି ଯାଇଥିଲା ଚିଠି କଥା। ମୁଁ ତା'ପରେ ଯେତେ ଥର ଘରକୁ ଯାଇଛି ମଧ୍ୟ ସେ ମନେ କରି ନଥିଲା ଚିଠିଟି ଦେବାକୁ।

ବାପାଂକ ଅବର୍ତ୍ତମାନରେ ବୋଉକୁ ଏକା ଏକା ନିରାଶ୍ରୟା କରି ଛାଡ଼ିଦେଇ ମୁଁ ଏତେ ଦୂରରେ ରହିବାକୁ ପସନ୍ଦ କଲି ନାହିଁ କିମ୍ବା ନିରାପଦ ମଧ୍ୟ ମଣିଲି ନାହିଁ। ଜମିବାଡ଼ି ସବୁ ଭାଗ ଲଗାଇ ଦେଇ ବୋଉକୁ ନେଇଆସିଲି ଲକ୍ଷ୍ନୌ। ବୋଉ ମୋ ସହିତ ଆସିବା ବେଳେ ଜିନିଷ ପତ୍ର ସଜାଡିବା ବେଳେ ତା' ଆଳିମାଳିକା ପେଟିରୁ ପାଇଥିଲି ସୁନୀତାର ଚିଠି। ଚିଠି ଖୋଲି ଦେଖିଲି ଯେ ଏହା ଭିତରେ ବିତିଗଲାଣି ଦୁଇବର୍ଷ। ଚିଠିରେ ଲେଖା ଥିଲା - ମୁଁ ମାଆ

ହେବାକୁ ଯାଉଛି, ମାତୃତ୍ୱ ପୂର୍ବରୁ ଯଦି ଆମେ ବିବାହ ନ କରିବା ତେବେ ବାଧ ହୋଇ ମୁଁ ଅନ୍ୟ ପନ୍ଥା ଧରିବି। ଅନ୍ୟ ପନ୍ଥାଟା ଅନ୍ୟତ୍ର ବିବାହ ନୁହେଁ।

ମୁଁ ଯେତିକି କ୍ରୋଧରେ ବୋଉକୁ ପଚାରିଲି - ଏ ଚିଠି କଥା ତୁ ମୋତେ କହିନଥିଲୁ କାହିଁକି, ସିଏ ସେତିକି ସରଳ ଭାବରେ ମୁଣ୍ଡରେ ହାତ ଦେଇ କହିଲା, ଇଲୋ ମୋ ପୋଡା ମୁହଁ ମନରେ ଜମା ନାହିଁ ଯେ ତୋ'ର ଗୋଟେ ଚିଠି ଆସିଥିଲା ବୋଲି। ଆଉ ଅଧିକ କହି ତା' ମନରେ କଷ୍ଟ ଦେବାକୁ ଚାହିଁଲି ନାହିଁ। ଜାଣୁଥିଲି ଚାହିଁଲେ ମଧ ମୁଁ ଆଉ ଫେରି ଯାଇ ପାରିବିନି ସେହି ଦୁଇବର୍ଷ ତଳକୁ। କେବଳ ନିଜ ଭିତରର ଅସ୍ଥିର ଉଦ୍‌ବେଳନକୁ ରୋକି ନେଇ କହିଲି - ଏହା ମୋ ବିମର୍ଷ ଭାଗ୍ୟର ଫଳ, ତୁ ଯେମିତି ମୋର ଏ ଚିଠି କଥା ଭୁଲିଗଲୁ ଠିକ୍ ସେମିତି ଭୁଲି ଯାଆ ମୋର ବାହାଘର କଥା।

ମୁଁ ଥିବା ସ୍ଥିର ପୃଥିବୀକୁ ପୁଣି ଥରେ ଦୋହଲାଇ ଦେଇ ଖୁବ୍ ଗମ୍ଭୀର ଭାବରେ ସ୍ମୃତିକୁ ଧରି ଆସିଲେ ସୁନୀତା। ତାକୁ ମୃଦୁ ନିର୍ଦ୍ଦେଶ ଦେଲେ କେକ୍ କାଟିବା ପାଇଁ। ସ୍ମୃତି କେକ୍ କାଟିଲା। ସେ କେକ୍ କାଟି କ୍ୟାଣ୍ଡେଲ ଲିଭାଇବା ବେଳେ ଅନ୍ୟ ମନସ୍କତା ବଶତଃ ମୁଁ ଭୁଲି ଯାଇଯାଇଥିଲି କହିବାକୁ ହାପି ବାର୍ଥ ଡେ ଟୁ ୟୁ। ସୁନୀତା ବି ଚୁପ୍ ଥିଲେ କେବଳ ସତୀଶ ବାବୁ ତାଂକର ମିଲିଟାରୀ ଟୋନ୍‌ରେ କହିଲେ - ହାପି ବାର୍ଥ ଡେ ଟୁ ସ୍ମୃତି। ତାଂକର ସ୍ୱର ଶୁଣି ଆମେ ଉଭୟ ସଚେତନ ହୋଇ ତାଳି ମାରିଲୁ ଏବଂ ସେ ତାଳିରେ ଏତେ ସନ୍ତର୍ପଣ ଥିଲା ଯେ ଲାଗୁଥିଲା ଯେମିକି କୌଣସି ଦୁର୍ଗତିରୁ ମୁକୁଳିବା ପାଇଁ ସାଂକେତିକ ତାଳି ଶବ୍ଦ ପରି।

ସ୍ମୃତି କେକ୍ କାଟି ମାଆ ପାଟି ଆଡକୁ ଖଣ୍ଡେ ବଢ଼ାଇଲା। ନିଜ ପାଟି ପାଖକୁ ବଢୁଥିବା ସ୍ମୃତିର ହାତ ଧରି ସୁନୀତା କହିଲେ - ଅତିଥିଙ୍କୁ ପ୍ରଥମେ। ମୋ ମୁହଁକୁ କିଛି ସମୟ ଚାହିଁ, ସ୍ମୃତି କେକ୍ ଖଣ୍ଡେ ବଢ଼ାଇ ଦେଲା ମୋ ପାଟିକୁ।

ଖୁବ୍ ନିରାଡମ୍ବରରେ ପାଳିତ ଜନ୍ମଦିନକୁ ଶୀଘ୍ର ସମାପନ କରି ସୁନୀତା ଗଲେ ଭିତରକୁ ଜଳଖିଆ ଆଣିବାକୁ। ଏହି ସମୟରେ ମୁଁ ସତୀଶ୍ ବାବୁଙ୍କୁ ପଚାରିଲି - ଆଜି ସ୍ମୃତିର ଜନ୍ମ ଦିନ ଅଥଚ ତା' ବାପା ଆସିନାହାନ୍ତି ଯେ ?

ଖୁବ୍ ଗମ୍ଭୀର ହୋଇ ସତୀଶ୍ ବାବୁ କହିଲେ - ଚୀନ୍‌ର ଦୁଃଖ ହୋୟାଙ୍ଗ ହୋ ପରି ସ୍ମୃତିର ବାପା ହିଁ ତ ମୋର ଦୁଃଖ।

ମାନେ !

ସ୍ମୃତି ଏକ ଅବୈଧ ପ୍ରଣୟର ସ୍ମୃତି। ତା' ମାଆର ଏକାନ୍ତ ଜିଦ୍ ପାଇଁ ସେ ଜନ୍ମ ନେଲା, ମାତ୍ର ଏ ଯାଏଁ ପାଇ ପାରିଲାନି ତା'ର ପିତୃତ୍ୱର ପରିଚୟ। ଦେଖିଲେନି କେମିତି ଶଙ୍କୋଚି ହୋଇ ଆମେ ତା'ର ଜନ୍ମଦିନ ପାଳନ କରୁଛୁ। ପ୍ରତିବର୍ଷ ଆମ ଦୁଇଜଣଙ୍କ ଭିତରେ ତା'ର

ଜନ୍ମଦିନ ପାଳନ ସୀମିତ ଥିଲା, ଏଥର କେବଳ ବ୍ୟତିକ୍ରମ ହୋଇ ଆପଣ ମିଶିଲେ। ମୁଁ ତାକୁ ବହୁତ ବୁଝାଇଥିଲି - ଜୀବନଟା ଖୁବ୍ ଦୀର୍ଘ। ଗୋଟେ ଇମୋସନ୍‌କୁ ଧରି ଜୀବନ ସାରା ଚଳି ହେବନି, କରାଇନେ ଗର୍ଭପାତ, ଆରମ୍ଭ କର ଏକ ନୂତନ ଜୀବନ। ମାତ୍ର ସେ ମାନିଲା ନାହିଁ, ଓଲଟି ଯୁକ୍ତି କଲା ଗର୍ଭପାତ କରାଇ ପିଲାଟିକୁ ନଷ୍ଟ କରି ଦେଲେ କ'ଣ ନଷ୍ଟ କରି ଦେଇପାରିବି ମୋ ଭିତରେ ସାଇତା ସ୍ମୃତିକୁ? ତା'ର ଏକାନ୍ତ ଜିଦ୍‌ରେ ସେ ଜନ୍ମ ଦେଲା ସ୍ମୃତିକୁ।

ଗଭୀର ଅନ୍ତର୍ଦାହରେ ଜଳୁଥିଲି ମୁଁ। ଏହି ସମୟରେ ସ୍ମୃତି ଗୋଟେ ଟ୍ରେରେ ଦୁଇପ୍ଲେଟ୍ ଜଳଖିଆ ଧରି ଆସିଲା। ସେ ଟ୍ରେଟି ଥୋଇ ସାରିବା ପରେ ମୁଁ ଡାକିଲି - ମାଆ ସ୍ମୃତି ଟିକେ ଏଠିକୁ ଆସିଲ ସ୍ମୃତି ମୋ ପାଖକୁ ଆସିବା ପରେ ମୁଁ କହିଲି - ଦେଖ, ତମ ଜେଜେ ମୋତେ କହିନଥିଲେ ଆଜି ତମର ଜନ୍ମଦିନ ବୋଲି, ସେଥିପାଇଁ ମୁଁ ତମ ପାଇଁ କୌଣସି ଗିଫ୍‌ଟ ଆଣି ପାରିନି। ହେଲେ ମୋ ପାଖରେ ଥିବା ଏଇ ଛୋଟିଆ ଗିଫ୍‌ଟିକୁ ତମକୁ ଦେଉଛି, ମନା ନ କରି ଗ୍ରହଣ କରିବ। ଏହା କହି ମୋ ବେକରୁ ଚେନଟି ବାହାରିକରି ସ୍ମୃତି ବେକରେ ପକାଇବାକୁ ଯାଉଛି ଘର ଭିତରକୁ ପଶି ଆସି ସୁନୀତା କହିଲେ - ନା, ସ୍ମୃତି ଦାନ ଗ୍ରହଣ କରେନା, ଦାବୀ ହାସଲ କରେ।

ହଠାତ୍ ସୁନୀତାର ଏମିତି କ୍ରୋଧିତ ସ୍ୱର ଶୁଣି ସତୀଶ୍ ବାବୁ କହିଲେ - ତୁ ଏମିତି ଉତ୍ତ୍ୟକ୍ତ ହୋଇ ପଡୁଛୁ କାହିଁକି ମାଆ!

ଉତ୍ତ୍ୟକ୍ତ କାହିଁକି ହେଉଛି ପଚାରନା ବାପା। ତମେ ସବୁବେଳେ କହୁଥିଲ ନା ତମ ବନ୍ଧୁକର ଶେଷ ଗୁଳିଟି ଅପେକ୍ଷା କରିଛି ସବଶେଷ ଶତ୍ରୁକୁ? ଇଏ ହେଉଛନ୍ତି ତମର ଚିର ଇପ୍‌ସିତ ସବାଶେଷ ଶତ୍ରୁ। ପାରିବ ଯଦି ଗୁଳି କର।

ବହୁତ ଭଲ ହେବ ସୁନୀତା। ଛାତି ତଳେ ଦୁଃଖର ନିଆଁ ସବୁ ସମୟରେ ଜାଳିବା ଅପେକ୍ଷା ଥରକରେ ଲିଭିଯିବ ମୋର ସମସ୍ତ ଦୁଃଖ। ଏକା ଏକା ଏତେ ବୋଝ ଧରି ଚାଲି ଚାଲି ମୁଁ ବି ଥକି ସାରିଲିଣି।

ଏକା! ଏକା କାହିଁକି?

ତମ ପାଖରେ ସିନା ମନେ ପକାଇବା ପାଇଁ ସ୍ମୃତି ଅଛି ହେଲେ ମୋ ପାଖରେ ସାଇତି ରଖିବା ଭଳି ସ୍ମୃତିଟିଏ କାହିଁ?

ମିଛ - ସବୁ ମିଛ।

ମୁଁ କୌଣସି କୈଫତ୍ ଦେଉନି, କେବଳ ଛାତି ପତାଇ ଦେଉଛି। ପାରୁଛ ଯଦି ନିଜେ ଗୁଳି କର, ତମ ହାତର ଗୁଳିରେ ମଲେ ସେ ମରଣ ବି ଲାଗିବ ପ୍ରିୟତମ ମରଣ। ମୋ

ମୃତ୍ୟୁରେ ଆଉ କେହି କାନ୍ଦିବାକୁ ନଥିଲେ ମଧ ତମେ ତ ଅଛ ଦୁଇଟୋପା ଲୁହ ଝରାଇବାକୁ।

ନିଆଁରେ ପାଣି ପକାଇଲା ପରି ଶାନ୍ତ ହୋଇଯାଇ ସୁନୀତା ସ୍ମୃତିକୁ ଭିଡି ଧରି ଭୋ-ଭୋ ହୋଇ କାନ୍ଦି ଉଠି କହିଲେ - ସବୁବେଳେ ପଚାରୁଥିଲୁ ନା ତୋ' ବାପା କାହାନ୍ତି ବୋଲି, ହେଇ ଦେଖ୍ ଇଏ ତୋର ବାପା।

ନିଜ ଚାରିପଟରେ ଘଟୁଥିବା ଘଟଣାମାନଂକୁ ଦେଖି ବିସ୍ମୟରେ ସ୍ଥାଣୁ ହୋଇ ଯାଉଥିଲେ ସତୀଶ୍ ବାବୁ। ତାଂକ ଆକ୍ଷିରେ ଭରି ଯାଇଥିଲା ଲୁହ। ସେ କୋହମିଶା ସ୍ୱରରେ କହିଲେ - ଆରେ ଇଏ ମୋର ସବାଶେଷ ଶତ୍ରୁ ନୁହଁନ୍ତି ମୋର ଅପେକ୍ଷାରେ ଅନ୍ତ।

* * *

# ।। ସତ୍ୟ ଆମ୍ଭ ।।

ମୋର ତମକୁ କିଛି କଥା କହିବାର ଅଛି, ହେଲେ ମୁଁ ତାକୁ ଏମିତି ମୁହାଁ ମୁହିଁ କହିପାରିବି ନାହିଁ, କେବଳ ଚିଠିରେ ଲେଖି ଜଣାଇବି।

କ'ଣ ଏମିତି କହିବାର ଅଛି ଯେ ସାମ୍ନାରେ କହିପାରିବନି, ଚିଠିରେ ଲେଖିବ ?

ସାମ୍ନା ସାମ୍ନି କହି ହେବନି ବୋଲି ତ ଚିଠିରେ ଲେଖିବି ବୋଲି କହୁଛି।

ହଉ ମୁଁ ତମର ଚିଠିକୁ ଅପେକ୍ଷା କଲି। ମୋ ବସ୍‌ଟି ଷ୍ଟାଣ୍ଡ ଛାଡୁଥିଲା, ତେଣୁ ମୁଁ ଆଉ ଅପେକ୍ଷା ନକରି ସୁଦତ୍ତା ଠାରୁ ବିଦାୟ ନେଲି। ବସ୍ ଭିତରେ ସାରା ରାତି ମୁଁ ଭାବି ଚାଲିଥିଲି ସେହି ଗୋଟିଏ କଥା - ମୋତେ ଏବେ କ'ଣ କହିବାକୁ ଚାହୁଁଛି ସୁଦତ୍ତା ? କ'ଣ କିଛି ରହିଯାଇଛି କି ତା' ପାରିବାରିକ ଜୀବନର ଗୋପ୍ୟ ଦୁଃଖ, ଯାହାକୁ ପ୍ରକାଶ କରି ସେ ହାଲ୍‌କା ହେବାକୁ ଚାହୁଁଛି ? ଯଦି ବି ଥାଏ ତେବେ ତାକୁ ପ୍ରକାଶ କରିବାକୁ ମୋତେ କାହିଁକି ବାଛିଲା ? ତା'ର ସେ ଗୋପନୀୟ ସତ୍ୟ ପାଠରେ ମୋର କିଛି ଭୂମିକା ଅଛିକି ? ଯଦିଓ ଏମିତି ନାନା ପ୍ରଶ୍ନ ମୋତେ ଆନ୍ଦୋଳିତ କରୁଥିଲା, ତଥାପି କୌଣସି ନିଶ୍ଚିତ ସିଦ୍ଧାନ୍ତରେ ମୁଁ ପହଂଚି ପାରୁନଥିଲି।

ସୁଦତ୍ତା - ମୋ ସ୍ମୃତିରେ ଗଭୀର ଆବେଗରେ ସାଇତା ଏକ ସ୍ମରଣୀୟ ପରିଚ୍ଛେଦ, ଯାହାକୁ ନିଜେ କେବଳ ପଢ଼ିହୁଏ କାହାକୁ ପଢ଼ାଇ ହୁଏନି। ସୁଦତ୍ତାର ସ୍ମୃତି ଯେ ବାରମ୍ବାର ମୋ ମନକୁ ନ ଆସିଛି କହିଲେ ସତ୍ୟର ଅପଳାପ ହେବ। ହେଲେ ଯେତିକି ସଂପର୍କକୁ ଆଜିଯାଏଁ ମୁଁ ସ୍ମୃତି କରି ସାଇତି ରଖିଛି, ତା'ର ପରିଭାଷା କ'ଣ ? ତାହା କ'ଣ ପ୍ରେମ ?

ସୁଦତ୍ତା ମୋତେ ଭଲ ଲାଗୁଥିଲା। ମାତ୍ର ଭଲ ଲାଗିବା ଓ ଭଲ ପାଇବାଟା ଏକା କଥା ନୁହେଁ। ଭଲ ଲାଗିବାରୁ ଭଲ ପାଇବା ଯାଏଁ ଯେତିକି ସମୟର ଆବଶ୍ୟକତା ଥିଲା ତାହା ବୋଧହୁଏ ଆମ ଉଭୟଙ୍କ ପାଖରେ ନଥିଲା। ଏକଥା ବି ହୋଇପାରେ ପ୍ରେମ ପରି ପିଚ୍ଛିଳ ରାସ୍ତାରେ ସନ୍ତର୍ପଣରେ ପାଦ ପକାଉ ପକାଉ ଆମ ଉଭୟଙ୍କର ସ୍ୱୀକାରୋକ୍ତିରେ ବିଳମ୍ବ ହୋଇଗଲା କିମ୍ବା ସୁଦତ୍ତା ଏକ ତରଫା ଭାବେ ଭାବିନେଲା ଯେ ମୋ ସହ ତା'ର ଗଢ଼ି ଉଠିଥିବା

ନୀରବ ପ୍ରେମର ଆୟୁଷ ବିବାହ ଯାଏ କେବେ ବଳବତ୍ତର ରହିବ ନାହିଁ। ତେଣୁ ବେଳହୁଁ ସାବଧାନ ନୀତିରେ ସେ ଆଗରୁ ବାଟ ଧରିନେଲା।

ଭାଗ୍ୟର ବିଡମ୍ବନା ଦେଖ ପ୍ରେମିକାର ପ୍ରେମ ବିବାହରେ ମୁଁ ହିଁ ଥିଲି ରାଜସାକ୍ଷୀ। ଏମ୍.ଏ. ପରୀକ୍ଷା ଦେଇସାରି ଘରକୁ ନ ଫେରି ଚିନ୍ତାମଣିଶ୍ୱରଠାରେ ଗୋଟିଏ ଛୋଟିଆ ଘରଭଡ଼ା ନେଇ ମୁଁ ବିଭିନ୍ନ ଚାକିରି ପାଇଁ ଇଣ୍ଟରଭ୍ୟୁ ଦେବାକୁ ପଢ଼ାପଢ଼ି କରୁଥାଏ। ଏବେ ଭୁବନେଶ୍ୱରର ଚିନ୍ତାମଣିଶ୍ୱର ଓ ପଚିଶ ବର୍ଷ ତଳର ଚିନ୍ତାମଣିଶ୍ୱର ଏରିଆ ଭିତରେ ଥିଲା ଆକାଶ ପାତାଳ ଫରକ। ମୁଁ ରହୁଥିବା ଅଂଚଳଟି ଯଦିଓ ସହରର କେନ୍ଦ୍ରସ୍ଥଳରେ ଥିଲା ତଥାପି ଗ୍ରାମୀଣ ପରିବେଶରୁ ମୁକୁଳି ନଥିଲା। ମାଳ ମାଳ ପୋଖରୀ ଓ ଗଡିଆ, ମଇଁଷିଙ୍କ ଖଟାନ୍ ଏବଂ ଗାଈଗୁହାଳ ପରିବେଷ୍ଟିତ ଅଂଚଳଟି ଘରଭଡ଼ା ଦୃଷ୍ଟିରୁ ଅନ୍ତତଃ ବ୍ୟୟବହୁଳ ନଥିଲା ଏବଂ ମୋ ଭଳି ନିମ୍ନମଧ୍ୟବିତ୍ତ ପରିବାରରୁ ଆସିଥିବା ଚାକିରି ଆଶାୟୀ ଭଡାଟିଆ ପାଇଁ ତାହା ଥିଲା ଆପାତତଃ ନିର୍ଭରଯୋଗ୍ୟ। ମୋର ସୌଭାଗ୍ୟ ଯେ କ୍ରମବର୍ଦ୍ଧିଷ୍ଣୁ ଭୁବନେଶ୍ୱରର ଅଭିବୃଦ୍ଧିକୁ ଦୂରଦୃଷ୍ଟିରେ ରଖି ସେକ୍ରେଟାରୀଏଟ୍‌ରେ ଚାକିରୀ କରୁଥିବା ମୋ ଘର ମାଲିକ ଜଣକ ତାଂକର ସେ ସ୍ଥାନରେ କିଣିଥିବା ଜାଗାଟିକୁ ଅନତିକ୍ରମଣରୁ ରକ୍ଷା କରିବା ପାଇଁ କେବଳ ପାଚେରୀ ଘେରାଇନଥିଲେ ବରଂ ତା' ଉପରେ ଦୁଇବଖରିଆ ଆଜବେଷ୍ଟସ ଘରଟିଏ କରିଥିଲେ ଯାହାକୁ ପରବର୍ତ୍ତି ସମୟରେ ଭୃତ୍ୟ ଆବାସରେ ପରିଣତ କରାଯାଇ ପାରିବ। ତେଣୁ ନାମମାତ୍ର ଭଡ଼ାରେ ସେ ମୋତେ ସେହି ଘରଟିକୁ ଭଡ଼ା ଦେଇ ପ୍ରକାରାନ୍ତରେ ତାଂକର ସେ ଜାଗା ଓ ଘର ବେଢ଼ପରି ନହେବା ଭୟରୁ ଥିଲେ ନିଶ୍ଚିନ୍ତ।

ରାତି ସେତେବେଳକୁ ଦଶ ପାଖା ପାଖି ହେବ। ହିଟର ଉପରେ ବସିଥିଲା ଭାତ ଓ ତା'ଭିତରେ ପଡିଥିଲା ଦୁଇଟି ଆଳୁ। ଗୋଟିଏ ଫିତା ଷ୍ଟୋଭ୍ ଉପରେ ବସିଥିଲା ଡାଲି। ମୁଁ ନିଶ୍ଚିନ୍ତରେ ଗୋଟିଏ କମ୍ପିଟେଟିଭ୍ ବହିଧରି ପେଟେଇ କି ପଢୁଥାଏ ମୋ ଖଟ ଉପରେ। ଏହି ସମୟରେ ଗେଟ୍‌କୁ କିଏ ବାଡାଇବାର ଶବ୍ଦ ହେଲା। ଶବ୍ଦଟି ଅନ୍ୟ କେଉଁଠୁ ଆସୁଥିବ ଭାବି ପ୍ରଥମେ ପ୍ରଥମେ ମୁଁ ତା' ଉପରେ ଗୁରୁତ୍ୱ ନଦେଇ ମୋ ପଢ଼ାପଢ଼ିରେ ଥିଲି ମଗ୍ନ। କ୍ରମଶଃ ଶବ୍ଦଟି ଟିକିଏ ଜୋର୍‌ରେ ଓ ଦ୍ରୁତରେ ହେଲା। ମୁଁ ଯେତେବେଳେ ନିଶ୍ଚିତ ହେଲି ଯେ ଶବ୍ଦଟି ଏ ଘରର ପାଚେରୀରେ ଲାଗିଥିବା ଗେଟ୍‌ର, କିଏ ବୋଲି ଜାଣିବାକୁ ବାହାର ଲାଇଟ୍ ଜଳାଇଲି। ମାତ୍ର ବାହାରେ ଜଳୁଥିବା ବଲ୍‌ବଟିର ପ୍ରଖରତା ଏତେ ନଥିଲା ଯେ ସେଇ ଲାଇଟରେ ଗେଟ୍ ପାଖର ଲୋକଂକୁ ଚିହ୍ନି ହେବ। ତେଣୁ ମୁଁ ପିଣ୍ଡା ଉପରୁ ଠିଆ ହୋଇ ପ୍ରଶ୍ନ କଲି - କିଏ ?

ମୁଁ ... ଆମେ....

ମୁଁ ପୁନଶ୍ଚ ପ୍ରଶ୍ନ କଲି କିଏ ?

ମୁଁ ସୁଦତ୍ତା।

ସୁଦତ୍ତା ! ମୁଁ ବିସ୍ମୟ ହୋଇ ପ୍ରଶ୍ନଟି ପଚାରି ଦେଇ ଘର ଭିତରକୁ ପଶିଗଲି ଟର୍ଚ୍ଚ ପାଇଁ। ଟର୍ଚ୍ଚଟି ମାରି ମାରି ଗେଟ୍ ପାଖକୁ ଆସି ଯାହା ଦେଖିଲି ସେଥିରେ ମୋର ଆଶ୍ଚର୍ଯ୍ୟ ନହେବାର ଅବକାଶ ନଥିଲା।

ସୁଦତ୍ତା ! ତମେ ? ଏତେ ରାତିରେ ?

କ'ଣ ଗେଟ୍ ବାହାରେ ଠିଆ କରାଇ ସବୁ ପ୍ରଶ୍ନର ଉତ୍ତର ଶୁଣିବ ନା ଗେଟ୍ ଖୋଲି ଭିତରକୁ ଡାକିବ ?

ହଁ - ହଁ, ତମେ ଭିତରକୁ ଆସ।

ସୁଦତ୍ତା ଗେଟ୍ ଭିତରକୁ ପଶୁ ପଶୁ ତା' ସାଥିରେ ଆସିଥିବା ବ୍ୟକ୍ତି ଜଣକୁ ଡାକିଲା, ଆସ ଭିତରକୁ ଆସ, ଅନ୍ଧାରରେ ଛିଡ଼ା ହୋଇ ରହିଲ କାହିଁକି ?

ସୁଦତ୍ତା ସହିତ ଚନ୍ଦନଙ୍କୁ ଦେଖିବା ପରେ ମୋର ବିସ୍ମୟ ଆହୁରି ବଢ଼ିଗଲା। ମୋ ମୁହଁର ଭାବକୁ ଠିକ୍ ରୂପେ ପଢ଼ିନେଇ ସୁଦତ୍ତା କହିଲା - ବ୍ୟସ୍ତ ହୁଅନି, ସବୁ କଥା କହିବୁ, ତମ ଘରକୁ ଚାଲ।

ଘର ଭିତରେ ପହଂଚୁ ପହଂଚୁ ସୁଦତ୍ତା କହିଲା - ମୁଁ ଓ ଚନ୍ଦନ ବିବାହ କରିଦେଲୁ। ଆଜି ପୁରୀ ଯାଇ ବିବାହ କରି ଆସିଛୁ। ଏବେ ଆଉ କ'ଣ ପଚାରିବାକୁ ଅଛି ତମେ ପଚାରି ପାର। ହଁ, ତମେ ଭାବୁଥାଇ ପାର ବିବାହ ପରେ ଆମେ ଏଠାକୁ କାହିଁକି ଆସିଛୁ ବୋଲି ? ଏଇଥି ପାଇଁ ଯେ ଆମକୁ ଆତ୍ମଗୋପନ କରିବାକୁ ଏକ ନିରାପଦ ସ୍ଥାନର ଆବଶ୍ୟକତା ଥିଲା। ପୁରୀ ଓ ଭୁବନେଶ୍ୱର ଭିତରେ ଯେ କୌଣସି ହୋଟେଲରେ ରହିଥିଲେ ମୋ ଭାଇ ନିଶ୍ଚୟ ଆମକୁ ଖୋଜି ବାହାର କରି ଦେଇଥାଆନ୍ତା। ତେଣୁ କୌଣସି ସମ୍ଭାବ୍ୟ ଝମେଲାକୁ ଏଡାଇବା ପାଇଁ ଆମେ ଏଠାକୁ ଚାଲି ଆସିଛୁ।

ତମର ଭାଇ ଏଥିରେ ଅରାଜି କାହିଁକି ?

ମୁଁ ଚାକିରୀ କରିଗଲିଣି ତ, ଭାଇଙ୍କର ଗୋଟିଏ ଭ୍ରମ ରହିଯାଇଛି ଯେ ଚାକିରିଆ ଝିଅମାନଙ୍କୁ ବାହା ହେବା ପାଇଁ ରାଜ କୁମାରମାନେ ଆସିବେ।

ଚନ୍ଦନ ବାବୁ ତ ରୂପରେ ଉଣା ନୁହଁନ୍ତି ?

ହଁ, ହେଲେ ତାଂକର ଇତିହାସ ତାଂକର ରୂପକୁ ଗୌଣ କରିଦେଇଛି।

ମୁଁ ଜାଣିଥିଲି ଚନ୍ଦନ ବାବୁଙ୍କର ଇତିହାସ। ବହୁ ଝିଅଙ୍କୁ ପ୍ରେମ କରିବାର ଖିଆଲି ମିଜାଜ୍। ଶାର୍ଟ ପ୍ୟାଣ୍ଟ ବଦଳାଇବା ପରି ସେ ପ୍ରେମିକା ବଦଳାଉଥିଲେ। ମୁଁ ମନେ ମନେ ଆଶ୍ଚର୍ଯ୍ୟ ହେଉଥିଲି ଯେ ଚନ୍ଦନ ବାବୁଙ୍କ ବିଷୟରେ ସବୁ ଜାଣି ଶୁଣି ସୁଦତ୍ତା କିପରି ଏତେ ବଡ଼ ନିଷ୍ପତ୍ତିଟିଏ ନେଇ ପାରିଲା।

ମୋର ଅନ୍ୟମନସ୍କ ଭାବ ଦେଖି ସୁଦତ୍ତା କହିଲା - ତମେ ଭାବୁଛ ନା ଚନ୍ଦନଙ୍କର ଇତିହାସ ଜାଣି ମୁଁ କିପରି ତାଂକୁ ଗ୍ରହଣ କଲି ? ଜାଣ ଇତିହାସ କେବେ ନୂଆ ଜିନିଷ ସୃଷ୍ଟି କରେନା, ଯାହାଥିଲା ତାହାର କେବଳ ଅବତାରଣା କରେ, ଯେଉଁଠୁ ଇତିହାସ ସରିଯାଏ ସେଇଠୁ ଆରମ୍ଭ ହୁଏ ବର୍ତ୍ତମାନ। ଚନ୍ଦନ ବାବୁ ଇତିହାସକୁ କବର ଦେଇ ବର୍ତ୍ତମାନରେ ବଂଚିବାକୁ ପ୍ରତିଶୃତି ଦେବାରୁ ମୁଁ ରାଜି ହୋଇଗଲି। ଏତଦ୍ ବ୍ୟତିତ ମୋତେ ଭଲ ଲାଗିଲା ନିଜ ପ୍ରେମର ଇତିହାସକୁ ନେଇ ତାଂକର ସ୍ୱୀକାରୋକ୍ତି ଏବଂ ସ୍ୱୀକାରୋକ୍ତିରେ ସ୍ପଷ୍ଟବାଦିତା। ପ୍ରେମରେ ନିଜକୁ ପ୍ରକାଶ କରି ପାରୁନଥିବା ପୁରୁଷମାନଂକୁ ମୁଁ ଘୃଣା କରେ। ସେହି ଦୃଷ୍ଟିରୁ ଚନ୍ଦନ ବାବୁଙ୍କର ପ୍ରେମରେ ନିଜକୁ ବିମୁକ୍ତ କରିବାର କଳାଟି ମୋର ପସନ୍ଦ ହେଲା।

ମୁଁ ମନେ ମନେ ଆଶଂକିତ ହେଲି ଯେ ପ୍ରେମକୁ ନେଇ ସୁଦତ୍ତାର ଏ ବିହ୍ୱୋଳଭାବ ଦୀର୍ଘସ୍ଥାୟୀ ହେବ ତ ?

ମୋତେ ଅଧିକ ସମୟ ଚିନ୍ତା କରିବାକୁ ନ ଦେଇ ସୁଦତ୍ତା କହିଲେ - ଆମେ ମନ୍ଦିରରେ ବିବାହ କରିଦେଇ ଆସିଛୁ ସତ କିଂତୁ ଏ ବିବାହକୁ ଆଇନ ସମ୍ମତ କରିବାକୁ ଆସନ୍ତାକାଲି କୋର୍ଟରେ ବିବାହ କରିବୁ। ଏଠି ତ କେହି ଚିହ୍ନାଲୋକ ନାହାନ୍ତି ଯେ ଆମ ପାଇଁ ସାକ୍ଷୀ ପଡିବ, ତେଣୁ ତମକୁ ଏ କାର୍ଯ୍ୟଟି କରିବାକୁ ପଡିବ। ମୁଁ ମନେ ମନେ ଭାବିଲି - ହଁ ଭାଗ୍ୟର ବିପର୍ଯ୍ୟୟ ବେଳେ ବର ବି ବରଯାତ୍ରୀ ହୁଏ।

ସୁଦତ୍ତା ପୁଣି କହିଲେ - କ'ଣ ପଡିବ ତ ?

ଏଥିରେ ମନା କରିବାର କ'ଣ ଅଛି ?

ଚନ୍ଦନ ବାବୁ କହିଲେ - କ'ଣ ଗୋଟେ ପୋଡି ଯିବାର ବାସ୍ନା ହେଉଛି।

ଆରେ ହଁ ତ - ହିଟର ଉପରେ ଭାତ ଓ ଷ୍ଟୋଭ୍ ଉପରେ ଡାଲି ବସିଥିଲା, ଆମର ଏ ଗପସପ ଭିତରେ ତାହା ପୋଡିଗଲା ବୋଧେ।

ବୋଧେ କ'ଣ, ପୋଡି ତ ଯାଇ ସାରିଲାଣି, ଦେଖୁନ ସେ ରୋଷେଇ ଘରଟି କିପରି ଧୂଆଁରେ ଭର୍ତ୍ତି ହୋଇଛି।

ହଉ ଯାଉ।

ଏବେ ତମେ ରାତିରେ ଖାଇବ କ'ଣ ?

ତମେମାନେ କ'ଣ ଖାଇସାରି ଆସିଛ ?

ହଁ - ଜଣେ ଠେଙ୍ଗୁଆ ଲୋକର ବସାକୁ ରାତି ଦଶଟାରେ ଆସିବା ବେଳେ କ'ଣ ରାତ୍ରିଭୋଜନ ମିଳିବାର ଭରସା କରି ଆସିଥାଆନ୍ତୁ ?

ହଉ, ତମେମାନେ ଯଦି ଖାଇକରି ଆସିଛ ଆଜି ରାତିକ ନ ଖାଇଲେ ମୋର ସେମିତି କିଛି ଅସୁବିଧା ହେବନି।

ନା - ନା, ତମକୁ ଉପାସ ରହିବାକୁ ପଡିବନି, ଆମ ବ୍ୟାଗ୍ ଭିତରେ ପୁରୀର ପ୍ରସାଦ ଅଛି, ଆମ ବିବାହର ଭୋଜି ନ ହେଲା ନାହିଁ, ତମକୁ ଅନ୍ତତଃ ପ୍ରସାଦ ତ ଖୁଆଇ ପାରିବୁ।

ପ୍ରସାଦ ସେବନ ପରେ ଆସିଲା ରାତି କଟାଇବାର ବେଳ। ମୋର ଇଚ୍ଛାଥିଲା ମୋର ଏକମାତ୍ର କୋଠାରୀଟିକୁ ସେମାନଂକ ଶୟନ ପାଇଁ ଛାଡି ଦେଇ, କୌଣସି ସାଂଗର ବସାକୁ ମୁଁ ଚାଲିଯିବା ପାଇଁ, ମାତ୍ର ରାତି ସେତେବେଳକୁ ଏତେ ଅଧିକ ହୋଇ ସାରିଥିଲା ଯେ ଏଭଳି ଏକ ଚିନ୍ତା ଅସ୍ୱାଭାବିକ ମନେ ହେଲା। ସୁଦତ୍ତା ବୋଧହୁଏ ମୋ ଚିନ୍ତାର ରହସ୍ୟକୁ ଉପଲବ୍ଧି କରି ପାରିଲେ। ତେଣୁ ତାଂକ ତରଫରୁ ସେ ପ୍ରସ୍ତାବ ଦେଲେ - ଆଜି ସାରା ରାତି ଆମେ ସବୁ ଗପିଗପି କଟାଇବା। ନିଜର ପ୍ରସ୍ତାବକୁ ସମର୍ଥନ କରାଇବାକୁ ଚନ୍ଦନଙ୍କ ଆଡ଼କୁ ଚାହିଁ ପଚାରିଲେ - ତମେ କ'ଣ କହୁଛ ?

ଚନ୍ଦନ ପରିସ୍ଥିତିକୁ ହୃଦୟଙ୍ଗମ କରି କହିଲେ - ଏମିତି ଅବସର ଜୀବନରେ ଖୁବ୍ କମ୍ ମିଳେ।

ସାରା ରାତି ଗପ। ବ୍ୟକ୍ତିଗତ ଜୀବନଠୁ କଲେଜ ଜୀବନ ଯାଏଁ ଲମ୍ବିଥିଲା ଗପର ଖିଅ। ନିଜର ପ୍ରେମ ଜୀବନକୁ ନେଇ ଖୁବ୍ ସ୍ପର୍ଶକାତର ଥିବା ଚନ୍ଦନ କିଂତୁ ମୋ ଆଶା ଠାରୁ ଅଧିକ ଉନ୍ମୁକ୍ତ ଥିଲେ ଚର୍ଚ୍ଚାରେ। ଅତୀତର ସମସ୍ତ ପ୍ରେମିକାମାନଂକ ଅବତାରଣା କରି ସୁଦତ୍ତା ପାଖରେ ପହଂଚି ସେ ଅଟକୁ ଥିଲେ ଭାବନାକୁ ବିମୁକ୍ତ କରିବାକୁ। କଥା ଉହ୍ୟ ରଖି କହିଲେ - ସୁଦତ୍ତାର ପ୍ରେମ ପାଇବାଟା କୌଣସି ଯୁଦ୍ଧର ବିଜୟ ଠାରୁ କମ୍ ନୁହେଁ। ଅନ୍ୟ ସବୁ ପ୍ରେମରେ ମୁଁ ଥିଲି ଏକକ ଛତ୍ରପତି, ଯେଉଁଠାରେ ପ୍ରତିଦ୍ୱନ୍ଦୀଙ୍କୁ ବାଜିମାତ୍ କରିବାର ସୁଯୋଗ ନଥିଲା। କିଂତୁ ସୁଦତ୍ତା କ୍ଷେତ୍ରରେ ପ୍ରବଳ ଦାବୀଦାରମାନଂକୁ ପଛରେ ପକାଇ ହୃଦୟ ଜିଣିବାର ଆନନ୍ଦ ଅନନ୍ୟ। ମୁଁ ମୋର ପ୍ରତିଦ୍ୱନ୍ଦୀମାନଂକୁ ଜାଣେ, ଜାଣେ ବି ତାଂକର ଶକ୍ତିକୁ, ସାମର୍ଥ୍ୟକୁ। ମାତ୍ର ସାହସୀ ହିଁ କେବଳ ଜିଣିପାରେ ଯୁଦ୍ଧ। ସେ ବୋଧହୁଏ ଭାବାବେଗରେ ଆହୁରି ବିମୁକ୍ତ ହୋଇ ଯାଇଥାଆନ୍ତେ, କିଂତୁ ତାଂକୁ ସେଥିରୁ କ୍ଷାନ୍ତ କରି ସୁଦତ୍ତା କଥାର ମୋଡ ବଦଳାଇ ଦେଲେ ଏବଂ କହିଲେ ପ୍ରେମରେ ବିଜୟ ଓ ପରାଜୟ ବୋଲି କିଛି ନ ଥାଏ। ଯେଉଁ ପ୍ରେମର ପ୍ରାପ୍ତିକୁ ନେଇ ଜଣେ ବିଜିତ ବୋଲି ମନେ କରେ, ସେ ପ୍ରାପ୍ତି ପରେ ହିଁ ସେ ଭୁଲିଯାଏ ପ୍ରେମକୁ, ମାତ୍ର ଯିଏ ପରାଜିତ ହୋଇଥାଏ ସେ ହିଁ କେବଳ ସାଇତି ରଖିଥାଏ ପ୍ରେମକୁ ସ୍ମୃତିରେ ସ୍ମୃତିରେ। ପ୍ରେମଟା ଯଦି କେବଳ ଦେହ ହୋଇଥାଏ ତେବେ ବିଜିତର ଗର୍ବ କରିବା ପାଇଁ କିଛି ଥାଏ, ମାତ୍ର ଯୁଗେ ଯୁଗେ ତ ପ୍ରେମ ଦେହାତୀତ।

କିଛି ସମୟ ଯାଏଁ ଗପ ସପର ଆସରରେ ନୀରବତା ରାଜୁତି କଲା। ମୁଁ ନୀରବତା ଭଂଗ କରି ପଚାରିଲି - ଏହା ପରେ ତମର ଭବିଷ୍ୟତ କାର୍ଯ୍ୟ ସୂଚୀ କ'ଣ ?

ଏବେ ଠୁ ସେ ବିଷୟରେ ଚିନ୍ତା କରିନୁ। ମୁଁ ସ୍କୁଲରୁ ପନ୍ଦର ଦିନ ଛୁଟି ନେଇଛି, ଛୁଟି ସରିବା ବେଳକୁ ଏକଥାର କିଛି ଗୋଟେ ସମାଧାନ ହୋଇଯାଇଥିବ।

କେଉଁ କଥାର ସମାଧାନ ?

ଏଇ ଆମ ଉଭୟଙ୍କ ପରିବାରରେ ଆମର ଗ୍ରହଣୀୟତାକୁ ନେଇ ଉଠିଥିବା ସମସ୍ୟା।

ମୁଁ ତ ଭାବୁଛି ତମେ ଉଭୟ ଯେଉଁଟାକୁ ସମସ୍ୟା ବୋଲି ଭାବି ଏ ମାର୍ଗ ଧରିଲ, ଆଉ ଟିକିଏ ଚେଷ୍ଟା କରିଥିଲେ ତାହା ବୈଦିକ ରୀତିରେ ହୋଇ ପାରିଥାଆନ୍ତା।

ଆମେ ସେ କଥା କରିବା ପାଇଁ ଚେଷ୍ଟା କରିନୁ ବୋଲି ତମେ କାହିଁକି ଭାବୁଛ ? ଆମେ ଉଭୟ ଯେତେବେଳେ ଉପଲବ୍ଧି କଲୁ ସେ ବାଟରେ ନୁହେଁ ବୋଲି ତ ଏ ବାଟକୁ ଆସିଲୁ। ପ୍ରଥମେ ପ୍ରଥମେ ସେମାନେ ଚେଷ୍ଟା କରୁଥିଲେ ନ କରାଇ ଦେବା ପାଇଁ, ଏବେ ଯେତେବେଳେ ହୋଇ ସାରିଲାଣି ବାହାଘର, ସେତେବେଳେ ଅନ୍ୟ ଉପାୟ ନ ପାଇ ହୁଏତ ସେମାନେ ଏହାକୁ ସ୍ୱୀକାର କରିଯିବେ ବୋଲି ମୁଁ ଭାବୁଛି।

ଏମିତି ଗପୁ ଗପୁ ରାତି ପାହି ସକାଳ ହେଲା। କୋର୍ଟରେ ମୁଁ ସାକ୍ଷୀ ପଡିଲି ସେମାନଙ୍କର ବିବାହର। ତା'ପରେ ସେମାନେ ବିଦାୟ ନେଇ ଚାଲିଗଲେ।

କିଛି ଦିନ ପରେ ଶୁଣିଲି, ସେମାନଂକର ଫେରିବା ପରେ ଉଭୟ ପରିବାର ତାକୁ ଗ୍ରହଣ କରି ନେଇ ବୈଦିକ ମତରେ ବିବାହ କରାଇ ଗୋଟେ ବଡ଼ ଭୋଜି ଭାତର ଆୟୋଜନ କରିଥିଲେ।

ଏହା ଭିତରେ ଅନେକ ବର୍ଷ ବିତି ଗଲାଣି। ଏମିତି କଥା ନୁହେଁ ଯେ ମୋର ସେମାନଂକ ସହ ଆଉ ଦେଖା ହୋଇନି ବୋଲି, ଦେଖା ହୋଇଛି, ମାତ୍ର ସେ ସାକ୍ଷାତର ପର୍ବ ସବୁ ଏତେ ଶିଥିଳ ଆବେଗରେ ଭରିଥାଏ ଯେ ଲାଗେ ଯେମିତି ଆମେ କେହି କାହାରି ଘନିଷ୍ଟ ନଥିଲୁ, ଏମିତି ରାସ୍ତାରେ ଯାଉଁ ଯାଉଁ ଚିହ୍ନା ପରିଚୟ ପରି। ତେଣୁ ଆମ ମାନଂକ ଭିତରର ସଂପର୍କ ଶିଥିଳ ହୋଇଯିବାଟା ଥିଲା ସ୍ୱାଭାବିକ। ମୁଁ ବି ଧିରେ ଭୁଲି ଯାଇଥିଲି ଯେ ସୁଦତ୍ତା ନାମରେ କେହି ଜଣେ ଥିଲା ଯାହା ସହ ଥିଲା ମୋ ଆବେଗିକ ସଂପର୍କ, ଯାହାକୁ ନେଇ ଦେଖାଯାଇଥିଲା ଅନେକ ସ୍ୱପ୍ନ।

ଅନେକ ବର୍ଷ ପରେ ଏକ ନିରୋଳା ଅଥଚ ସଂକ୍ଷିପ୍ତ ସମୟ ପାଇଁ ଦେଖା ହୋଇଥିଲା ସୁଦତ୍ତ ସହ, ଯେତେବେଳେ ସେ କହିଥିଲା ତମକୁ ମୋର ଅନେକ କଥା କହିବାର ଅଛି, କିଂତୁ ଯାହା କହିବାର ଅଛି, ଏମିତି ମୁହାଁ ମୁହିଁ କରିହେବନି, କେବଳ ଚିଠିରେ ଲେଖି ଜଣାଇବି। ଆଉ ଆଜି ଆସିଛି ସେ ଚିଠି।

ଚିଠିଟି କୌଣସି ପ୍ରହେଳିରୁ କମ୍ ନୁହେଁ। ଦୀର୍ଘ ଚିଠିଟିରେ ଆମ ସଂପର୍କ ଆରମ୍ଭରୁ ଆଜିଯାଏଁର ଏକ ଧାରା ବିବରଣୀ। ମୁଁ ଚିଠିଟି ପଢ଼ିବା ବେଳେ ଭାବୁଥିଲି - କ'ଣ ଆବଶ୍ୟକତା

ରହିଛି ସେହି ପୁରୁଣା ପାଠର ଆଲୋଚନା କରି ? ଜୀବନ ଏହା ଭିତରେ କେତେ ମୋଡ ନେଲାଣି, କ'ଣ ଲାଭ ହେବ ଭାବପ୍ରବଣତାର ସେହି କେତୋଟି ମୁହୂର୍ତ୍ତକୁ ହୃଦୟରେ ସାଇତି ରଖିବାରେ ? ମାତ୍ର ଚିଠିର ଶେଷରେ ଥିଲା ହିଁ ମଂଜ, ଯେଉଁଠି ସୁଦତ୍ତା ଖୁବ୍ ସତର୍କ ଓ ସନ୍ତର୍ପଣରେ ଉଲ୍ଲେଖି କରିଥିଲେ - ଆମ ବିବାହ ପରେ ତମ ସହ ସଂପର୍କ ଶିଥିଳ ହୋଇ ଯିବାର କାରଣ କ'ଣ ଜାଣ ? ଈର୍ଷା । ପୁରୁଷମାନେ ଯେ ଏପରି ଈର୍ଷାପରାୟଣ ମୁଁ ପ୍ରଥମ କରି ଅନୁଭବ କଲି ଚନ୍ଦନଙ୍କୁ ଦେଖି । ତମ ନାଆଁ ପଡିଲେ ତାଂକ ଦେହରେ ଲାଗୁଥିଲା ନିଆଁ ଏବଂ ଥରେ ସେ ନିଆଁ ଲାଗିଲେ ତାହା ଜଳୁଥିଲା ଅନେକ ଦିନ ଯାଏ ତାଂକ ଭିତରେ । ଏଥିପାଇଁ ଅନେକ ପାରିବାରିକ ଅଶାନ୍ତି ସୃଷ୍ଟି ହୋଇଥିଲା । ଶେଷରେ ମୁଁ ବାଧ ହୋଇ ନିଷ୍ପତ୍ତି ନେଲି ମୋର ଦାମ୍ପତ୍ୟ ଓ ପରିବାରକୁ ସୁରକ୍ଷିତ ରଖିବାକୁ ହେଲେ ତମର ସ୍ମୃତି କେବଳ ନୁହେଁ ତମ ନାଆଁ ଠାରୁ ମଧ ଦୂରେଇ ରହିବାକୁ ପଡିବ । ତେଣୁ ଦୂରେଇ ରହିଲି । ତମ ମନରେ ଏବେ ପ୍ରଶ୍ନ ଉଠିପାରେ ପୁଣି ଏତେ ବର୍ଷ ପରେ ଏ ସ୍ୱୀକାରୋକ୍ତି କାହିଁକି ? ହଁ- ଉଠିବା ସ୍ୱାଭାବିକ ମଧ । ଏବେ ଆମେ ପରିଣତ ବୟସରେ, ଏବେ ଆଉ ତାରୁଣ୍ୟର ତରଙ୍ଗ ନାହିଁ ଯେ ଭାଂଗି ଦେବ ପରିବାରର ବନ୍ଧ । ମାତ୍ର ଭିତରେ ଚାପି ହୋଇ ରହିଥିବା ଏ କଥାଟି ମୋତେ ଏମିତି ରୁନ୍ଧି ଚାଲିଥିଲା ଯେ ସ୍ୱୀକାରୋକ୍ତିଟି ନଦେଇଥିଲେ ହୁଏତ ଏହା କେତେ ବେଳେ ମୋ ଛାତି ଫଟାଇ ବାହାରି ଆସିଥାଆନ୍ତା । ମୁଁ ଜାଣେ ମୁଁ ଦ୍ରୌପଦୀ ନୁହେଁ ଯେ ମୋ ସ୍ୱୀକାରୋକ୍ତିରେ ପକ୍ୱ ହେବ ସତ୍ୟ ଆମ୍ବ, ମାତ୍ର ଏତିକି ଜାଣେ ଯେ ମୋର ଏ ସ୍ୱୀକାରୋକ୍ତି ଅନ୍ତତଃ ତମ ଛାତି ଭିତରେ ସାଇତା ମୋର ଧୂମିଳ ଚିତ୍ରପଟରୁ ପୋଛି ଦେବ ଅଳନ୍ଧୁର ଆସ୍ତରଣ, ଯଦି ସେତକ ହୁଏ ମୁଁ ଖୁସି ହେବି ।

* * *

# ॥ ମାଓ ରୂପ ॥

ସକାଳ ହେଲା । ହେଲେ ସେକ୍ଟରର ସକାଳ ଯେମିତି ଆସେ ସେମିତି ଆସିଲା ନାହିଁ । ପ୍ରାତଃ ଭ୍ରମଣରେ ଯାଉଥିବା ଲୋକମାନେ ଅଭ୍ୟାସ ବଶତଃ ଯଦିଓ ବିଛଣା ଛାଡ଼ି ଉଠି ସାରିଥିଲେ କିଂତୁ ଭୟରେ କବାଟ ଖୋଲି ବାହାରି ପାରୁନଥିଲେ ବାହାରକୁ । ପ୍ରାତଃ ଭ୍ରମଣରେ ଯାଇ ପାରୁନଥିବାର ନୈରାଶ୍ୟ ନେଇ କିଛି ଲୋକ ବସି ଯାଇଥିଲେ ଯୋଗାସନରେ । କାନ ଡେରୁଥିଲେ ସେକ୍ଟର ମଝିର ଥିବା ମନ୍ଦିରର ପ୍ରାତଃ ଆଳତୀର ଘଣ୍ଟା ଧ୍ୱନି ଓ ଗାୟତ୍ରୀ ମନ୍ତ୍ରର ଉଚ୍ଚାରଣ ଶୁଣିବାକୁ । ଅଥଚ ତାହା ବି କାନରେ ବାଜୁ ନଥିଲା । କିଛି ଲୋକ ସକାଳ ପାଇଁ ବ୍ୟଗ୍ରତାର ଆତିଶଯ୍ୟରେ ଧୀରେ କରି ଝରକା କବାଟ ଖୋଲି ପରଖୁଥିଲେ ପାହାନ୍ତି ପହରର ଆୟୁଷରୁ ଫର୍ଚ୍ଚା ସକାଳର ବ୍ୟବଧାନକୁ । ଅନିଷା କରୁଥିଲେ କେହି ଲୋକ ବାକ ବାହାରିଲେଣି କି ନାହିଁ ।

ସମସ୍ତ ଭୟର ଅବସାନ ଘଟାଇ ସକାଳ ଆସିଲା । ଫର୍ଚ୍ଚା ଆଲୁଅରେ ଚିହ୍ନି ହେଲା ମୁହଁ । ଦିଶିଲା ଘରଦ୍ୱାର, କୁହୁଡ଼ିଆ ରାସ୍ତା, ପତ୍ରରେ କାକର ବିନ୍ଦୁ । ଧୀରେ ଧୀରେ ଖୋଲିଲା କବାଟ । ଗେଟ୍ ବାହାରକୁ ବାହାରିଲେ ଜଣେ ଜଣେ କରି । ସମସ୍ତଙ୍କ ମୁହଁରେ ଲାଗି ରହିଥିଲା ଏକ ବିସ୍ମୟ ଭାବ । ଗତକାଲି ରାତିରେ କ'ଣ ଘଟିଛି ଘଟଣାଟି ଜାଣିବା ପାଇଁ । ରାତି ଅଧରେ ଏତେ ସଂଖ୍ୟାର ପୁଲିସ୍ ଗାଡିର ଧାଁ-ଧଉଁଡ, ଧର-ଧର, ଦୁଇ ରାଉଣ୍ଡ ଗୁଳି ଚାଳନାର ଶବ୍ଦ ଉଣା ଅଧିକେ ଏ ସେକ୍ଟରର ଅଧା ଲୋକ ଶୁଣିଥିବେ, ଯେଉଁମାନେ ସାଧାରଣତଃ ବିଳମ୍ବରେ ବିଛଣାକୁ ଯାଆନ୍ତି । ଅଥଚ ସାହସ କରି ସେତେବେଳେ କେହି ବାହାରି ନଥିଲେ ଘଟଣା କ'ଣ ଜାଣିବାକୁ ।

ସତ୍ୟାନନ୍ଦ, ଯିଏ ଲେଖକୀୟ ନିଶାରେ ସାରା ରାତି ଅନିଦ୍ରା ରହି ଲେଖନ୍ତି ଏବଂ ଅନ୍ୟମାନେ ଯେତେବେଳ ବିଛଣା ଛାଡି ପ୍ରାତଃଭ୍ରମଣରେ ଯାଆନ୍ତି ସେତେବେଳେ ସେ ବିଛଣାକୁ ଯାଆନ୍ତି । ଗତରାତିରେ ଏ ଘଟଣା ଘଟିବା ବେଳେ ସେ ବସିଥିଲେ ତାଂକ ପଢ଼ା ଟେବୁଲ ପାଖରେ । ଯେହେତୁ ତାଂକ କ୍ୱାଟରଟି ଉପର ମହଲାରେ ଥିଲା ଏବଂ ଘଟଣା ଘଟିଥିବା

ସ୍ଥାନଟି ତାଂକ କ୍ୱାଟରର ଅନତୀ ଦୂରରେ, ସେ ପ୍ରତ୍ୟେକ୍ଷ କରିଥିଲେ ସମଗ୍ର ଘଟଣାଟି । ଏ ସମସ୍ତ ହୋ - ହାଲ୍ଲା ଶବ୍ଦରେ ଲେଖାଲେଖିରୁ ତାଂକ ଧ୍ୟାନ ବ୍ୟାହତ ହେବା ଯୋଗୁଁ, ସେ ଯେତେବେଳ ଚାହିଁଲେ ବ୍ୟାପାରଟି କ'ଣ ଜାଣିବାକୁ ତଳକୁ ଯିବା ପାଇଁ, ଠିକ୍ ସେତିକି ବେଳେ ଫୁଟିଥିଲା ଦୁଇ ରାଉଣ୍ଡ ଗୁଳି । ଗୁଳି ଶବ୍ଦ ଶୁଣି ତାଂକ ପତ୍ନୀ ଉଠି ଆସିଲେ । ୟାଙ୍କୁ ଝରକା ପାଖରେ ଠିଆ ହୋଇ ସେ ଦୃଶ୍ୟ ଦେଖୁଥିବାରୁ ତୁରନ୍ତ ଝରକାଟି ବନ୍ଦ କରିଦେବାକୁ କହିଲେ - ଦେଖ କିଏ ଡକାୟତି କରୁଛନ୍ତି କି ଅପହରଣ । ତମେ ଯଦି ଏମିତି ଝରକା ଖୋଲି ଦେଖ, ତମେ ତ ସେମାନଙ୍କୁ ଦେଖି ପାରିବ ନାହିଁ ବରଂ ତମ ମୁହଁରେ ଲାଇଟ୍ ପଡୁଥିବାରୁ ସେମାନେ ତମକୁ ଦେଖି ପାରିବେ । ଯଦି ସେ ଘରବାଲା ତମକୁ ଦେଖିଥିବେ, ତମେ ଦେଖିଛ ବୋଲି ତମକୁ ସାକ୍ଷୀ କରିବେ । ପାରିବ ସେ ଝାମେଲାକୁ ? ଝରକା ବନ୍ଦ କରି ଚୁପ୍ ଚାପ୍ ଶୁଅ ।

ଆରେ ଶୋଇବା ପୂର୍ବରୁ ତ କ'ଣ ହୋଇଛି ଅନ୍ତତଃ ଜାଣିବା କଥା ।

ବଳେ ସକାଳକୁ ସମସ୍ତେ ଜାଣିଲେ ତମେ ଜାଣିବ ନାହିଁ କି, ଏତେ ବ୍ୟସ୍ତ କାହିଁକି ?

ପତ୍ନୀଙ୍କ ବାଧରେ ସେ ପଢ଼ା ବନ୍ଦ କରି ବିଛଣାକୁ ଗଲେ ସିନା ହେଲେ ଶୋଇ ପାରିଲେ କେଉଁଠି । ଅନ୍ୟମାନଙ୍କ ପରି ସେ ମଧ ଅପେକ୍ଷା କରିଥିଲେ ଅଧୀର ହୋଇ ସକାଳକୁ । ଆକାଶ ଫର୍ଚ୍ଚା ହେବା କ୍ଷଣି ସେ ବାହାରକୁ ବାହାରି ପଡ଼ିଲେ । ବହୁ ବର୍ଷ ହେଲାଣି ସେ ଦେଖିନଥିଲେ ସକାଳ । ସକାଳ ଯିଏ ପ୍ରତିଦିନ ନବଜନ୍ମର ବାର୍ତ୍ତା ନେଇକରି ଆସେ ସେ ଯେ ଏମିତି ଗୁମ୍ ସୁମ୍ ହୋଇ ଆସୁଥିବ ଏ ଧାରଣା ତାଂକର ନଥିଲା । ସେ ଖୋଜୁଥିଲେ ଗୋଟେ ଚିହ୍ନା ମୁହଁ, ଯାହାକୁ ପଚାରି ପାରିବେ ଘଟଣା କ'ଣ ? ଏ ବର୍ଷ ଅସମ୍ଭବ ଥଣ୍ଡା ପଡ଼ିଥିବାରୁ ଯାହାଙ୍କୁ ସେ ଦେଖୁଥିଲେ ଆଶରୀର ଆଚ୍ଛାଦିତ ହେବାସହ ସେମାନେ ମୁଣ୍ଡରେ ଲଗାଇ ଥିଲେ ମଂକି କ୍ୟାପ୍ । ସେଥିରେ ଏତେ ସହଜରେ କାହାରିକୁ ଚିହ୍ନିବା ସମ୍ଭବ ନଥିଲା ।

ସିଏ କାହାରିକୁ ଚିହ୍ନି ପ୍ରତ୍ୟେୟ କରି ଏ ପ୍ରଶ୍ନଟି ପଚାରିବା ପୂର୍ବରୁ କିଏ ଜଣେ ତାଂକୁ ଚିହ୍ନି ପାରି କହିଲା - ଆଶ୍ଚର୍ଯ୍ୟ ! ଆପଣ ଏତେ ସକାଳୁ ଉଠି ସାରିଲେଣି କେମିତି ? କ'ଣ କାଲି ରାତିରେ ଘଟିଥିବା ଘଟଣା ପାଇଁ ?

କ'ଣ ଘଟିଛି କାଲି ରାତିରେ ?

ସତରେ କ'ଣ ଜାଣି ନାହାନ୍ତି ନା ଜାଣିକି ଅଜଣା ହେଉଛନ୍ତି ?

ସତରେ ମୁଁ କିଛି ଜାଣିନି । ପୂର୍ବ ରାତିରେ ମୁଁ ସାରା ରାତି ଅନିଦ୍ରା ଥିବାରୁ କାଲି ଟିକେ ଜଲଦି ଶୋଇ ଯାଇଥିଲି ।

ଆରେ କୁମ୍ଭୀର ନେଇ ମଝି ନଈରେ କଲାଣି, ଆପଣ ଶାନ୍ତିରେ ଶୋଉଛନ୍ତି ?

ଏତେ ଗୌରଚନ୍ଦ୍ରିକା, ନକରି କ'ଣ ହୋଇଛି କୁହନ୍ତୁ ।

ଆମ ଏଇ ସେକ୍ଟରରେ ଦୀର୍ଘ ସାତବର୍ଷ ହେଲାଣି ରହି ଆସିଥିବା ମାଓବାଦୀ ନେତା ଦେଓଧର କାଲି ପୋଲିସ୍ ହାତରେ ଧରା ପଡିଛି, ଆପଣ ଆପଣଙ୍କ ସାହିତ୍ୟିକ ଭାଷାରେ ତାକୁ କ'ଣ ବିଖ୍ୟାତ କି କୁଖ୍ୟାତ ମାଓବାଦୀ କହିବେ ତାହା ଆପଣ ସ୍ଥିର କରନ୍ତୁ।

ଦେଓଧର! ଯିଏ ଅଟୋ ଚଲାଏ ତ?

ହଁ - ହଁ, ସେଇ ଦେଓଧର। ଅଟୋ ଡ୍ରାଇଭର ରୂପରେ ସେ ସାତବର୍ଷ ହେଲାଣି ଆମ ନାକ ତଳେ ରହି ମାଓବାଦୀ କାର୍ଯ୍ୟକଳାପ ଚଳାଇ ଆସିଥିଲା।

ମୁଁ ଭାବୁଛି ପୁଲିସ ଅନ୍ୟ କାହାକୁ ଗିରଫ କରିବାକୁ ଆସି ବୋଧେ ଭୁଲରେ ଦେଓଧରକୁ ଗିରଫ କରିଥିବେ।

ଆମ ଉଭୟଙ୍କ କଥାବାର୍ତ୍ତା ମଝିରେ ଏକ ଦୁଇ କରି ପ୍ରାୟ ପାଞ୍ଚ ସାତ ଜଣ ଲୋକ ଆସି ଜମା ହୋଇ ସାରିଥିଲେ। ସେମାନଂକ ଭିତରୁ ଜଣେ କହିଲା - ପୁଲିସ୍ କାହିଁକି ଭୁଲ କରିବ? ନିର୍ଦ୍ଧିଷ୍ଟ ସୂଚନା ନେଇ ସେମାନେ ଆସିଥିଲେ। ଜାଣନ୍ତି କେତେ ଜିଲୋଟିନ୍ ଛଡ଼ି, ଆର.ଡି.ଏକସ ଓ ଡିଟୋନେଟର ତା' ଘର ଭିତରୁ ବାହାରିଛି?

ସମସ୍ତେ ସେ ସୂଚନା କର୍ତ୍ତାଙ୍କୁ ବିସ୍ମୟ ହୋଇ ଚାହିଁଲା ବେଳେ ସେ ପୁଣି ଏକ ବୋମା ପକାଇବା ଭଳି କହିଲେ - ତା'ପାଖରେ ଏସ୍.ଏଲ.ଆର ବନ୍ଧୁକ ଥିଲା, ପୁଲିସଙ୍କୁ ଦେଖି ସେ ଆକ୍ରମଣ କରିବାକୁ ଉଦ୍ୟତ ହେଲା ବେଳେ ଏମାନେ ଦୁଇରାଉଣ୍ଡ ଗୁଳି ଚଳାଇଦେଲେ। ଅନ୍ୟ ଉପାୟ ନ ପାଇ ସେ ହାତଟେକି ସରେଣ୍ଡର କଲା।

ଆମେମାନେ ତାହାଲେ ଏକ ବାରୁଦ ଗଦା ମଧ୍ୟରେ ରହୁଥିଲେ?

ସତ୍ୟାନନ୍ଦ ସମବେତ ଭିଡ଼ର ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲେ - ଦେଓଧର ଯଦି ମାଓବାଦୀ ଥିଲା, ତେବେ ତା'ର ଏତେଦିନ ରହଣୀ ଭିତରେ ସେ ତ କୌଣସି ମାଓବାଦୀ କାର୍ଯ୍ୟ କରିନାହିଁ?

କାର୍ଯ୍ୟ କରୁନଥିଲା ବୋଲି ଆପଣ କାହିଁକି ଭାବୁଛନ୍ତି? ତା'ର କାର୍ଯ୍ୟ ତ ଏ ସହର ଭିତରେ ନଥିଲା ନା? ଯେଉଁ ସବୁ ଆଦିବାସୀ ଇଲାକାରେ ମାଓବାଦୀଙ୍କ କାର୍ଯ୍ୟ ଚାଲିଛି, ଇଏ ଏଠାରେ ରହି ତା'ର ମାଷ୍ଟରପ୍ଲାନ ପ୍ରସ୍ତୁତ କରୁଥିଲା ବୋଧେ।

ହେଲେ ସେ ଲୋକଟାର ଚାଲିଚଳନ, କଥାବାର୍ତ୍ତା କେବେ ବି ସନ୍ଦିଗ୍ଧ ନଥିଲା। ମୁଁ ଅନେକ ଥର ତା' ଅଟୋରେ ବଜାର କରିବାକୁ ଯାଇଛି। ସେ ମଝିରେ ମଝିରେ ଆମ କଥାବାର୍ତ୍ତାରେ ସାମିଲ ହୋଇ ହୁ-ହୁ ହୋଇ ବଢୁଥିବା ବଜାରଦର ଉପରେ ତା'ର ଚିନ୍ତା ପ୍ରକଟ କରେ। ତା'ପରେ ସେ ତା' ଅଟୋରେ ସ୍କୁଲକୁ ନେଉଥିବା ପିଲାମାନଙ୍କର ଖୁବ୍ ପ୍ରିୟ ଦେଓଧର ଙ୍କଙ୍କ ହୋଇ ଯାଇଥିଲା। ପିଲାମାନେ ସ୍କୁଲ ଯିବାକୁ ନମଂଗୁଥିଲେ ବି ଦେଓଧର କଥାରେ ସ୍କୁଲ ବାହାରି ପଡନ୍ତି।

ଆପଣ ଠିକ୍ କହିଛନ୍ତି ସତ୍ୟାନନ୍ଦ ବାବୁ। ବୋଧେ ମାଓବାଦୀ କ୍ୟାଡରରେ ଉପର ସ୍ତରରେ ଥିଲା ଦେଓଧର, ସେଥିପାଇଁ ଜଂଗଲରେ ରହି ଗରିଲା ଯୁଦ୍ଧ ନକରି ଏଠି ରହି ଯୋଜନା ପ୍ରସ୍ତୁତ କରୁଥିଲା ଏବଂ ଏଠିକାର ଖବର ତା'ର କ୍ୟାମ୍ପମାନଂକୁ ପଠାଉଥିଲା।

ରକ୍ଷା ହୋଇଯାଇଛି ସେ ଏଠାରେ କୌଣସି ଅଘଟଣ ଘଟାଇବା ପୂର୍ବରୁ ଧରାପଡି ଯାଇଛି। ଥରେ ଭାବନ୍ତୁ ତ - ସେ ଯଦି ସ୍କୁଲ ନେଉଥିବା ପିଲାଙ୍କୁ ଅପହରଣ କରି ନେଇଯାଇଥାଆନ୍ତା କିମ୍ବା ଆମ ସେକ୍ଟରରେ ବୋମା ଫୁଟାଇ ଥାଆନ୍ତା ତେବେ କ'ଣ ହୋଇ ଥାଆନ୍ତା ଅବସ୍ଥା ?

ଦେଓଧର ଧରା ହୋଇଗଲା ବୋଲି ଆପଣ ଏମିତି ଆଶ୍ୱସ୍ତ କାହିଁକି ହୋଇ ଯାଉଛନ୍ତି ? ଜଣେ ଦେଓଧର ଧରା ହୋଇଗଲେ କ'ଣ ମାଓବାଦର ଜଡ଼ ଉପୁଡିଗଲା ? ଇଏ ଯେମିତି ସାତବର୍ଷ ହେଲାଣି ଆମ ସାଂଗରେ ଥିଲା ଆମେ ଜାଣି ନଥିଲେ, ଆଉ କିଏ ହୁଏତ ସତର ବର୍ଷ ଧରି ରହିଆସୁଥିବ ଆମେ ଜାଣିନଥିବା।

ମାଓବାଦ ତ ଗୋଟେ ରୂପ ନୁହଁ ନା - ଗୋଟେ ବିଚାରଧାରା, କାହା ଭିତରେ କେଉଁ ବିଚାରଧାରା ଅଛି ତାକୁ ଆମେ କେମିତି ଜାଣିବା ? ଏବେ ସମୟ ଆସିଛି ମାଓବାଦୀଙ୍କୁ ଧରିବା ଅପେକ୍ଷା - ମାଓବାଦର କାରଣ ଓ ନିରାକରଣ ଉପରେ ଗୁରୁତ୍ୱ ଦେବା କଥା। ଏବେ ଆଉ ବଳପ୍ରୟୋଗ କରି ଏ ସ୍ୱରକୁ ଦବାଇ ଦେବାର ସମୟ ନାହିଁ।

ଛାଡ଼ନ୍ତୁ - ଇଏ ତ ସବୁ ସରକାରଙ୍କ କାର୍ଯ୍ୟ, ଏଥିରେ ଆମେ ତମେ ମୁଣ୍ଡ ଖେଳାଇ କ'ଣ କରି ପକାଇବା ?

ହଁ - ତାହା ସତ୍ୟ କିଂତୁ ସଂପୂର୍ଣ୍ଣ ସତ୍ୟ ନୁହେଁ। ଆମେମାନେ ଆଜିଯାଏଁ ଯେଉଁଳି ସବୁ ଦାୟିତ୍ୱ ସରକାରକୁ ଦେଇ ନିଶ୍ଚିତ ହୋଇଯାଉଛନ୍ତି ତାହା ଏ ଦେଶ ପାଇଁ ଶୁଭଙ୍କର ନୁହଁ। ଆଜି ଏ ବିଷୟରେ ଆଉ ଆଲୋଚନା କରିବାକୁ ମୋର ବେଳ ନାହିଁ, ମୋର ଅଫିସ୍ ବେଳ ହେଲାଣି କହି ବିଦାୟ ନେଲେ ସତ୍ୟାନନ୍ଦ।

ଘରେ ପହଂଚୁ ପହଂଚୁ ଷ୍ଟାଣ୍ଡାର୍ଡ ଟୁ'ରେ ପଢୁଥିବା ତାଂକ ନାତୁଣୀ ଧାଇଁ ଆସି କହିଲା - ବୁଝିଲ ଜେଜେ ! ଜେଜି କହୁଥିଲେ ଗୋଟେ ମାଓବାଦୀ ଧରା ପଡିଛି ବୋଲି। କ'ଣ ସତ ? ମାଓବାଦୀ ଗୋଟେ କି ଜୀବ ଜେଜେ ?

ତୁ ବାଘ ଦେଖିଛୁ ବାଘ ! ମାଓବାଦୀ ବାଘଠୁ ବି ଆହୁରି ଶକ୍ତିଶାଳୀ ଜୀବ। ସେ ଜଂଗଲରେ ରହେ। ଭୁଲରେ ସହରକୁ ପଶି ଆସିଥିଲା ତ, ତାକୁ ଧରି ଜଂଗଲକୁ ପଠାଇ ଦେଲେ।

***

## ।। ଅନ୍ୟ ଏକ ପୃଥ୍ୱୀର ଅନ୍ୱେଷା ।।

ଖବର କାଗଜର ସମସ୍ତ ଖବରକୁ ଟିକିନିଖି କରି ପଢ଼ିବା ସୁଦର୍ଶନ ବାବୁଙ୍କର କେବଳ ସଉକ ନଥିଲା ବରଂ ଅଭ୍ୟାସରେ ପରିଣତ ହୋଇ ଯାଇଥିଲା । ପ୍ରତିଦିନ ଖବର କାଗଜ ପଢ଼ି ସାରିବା ପରେ ଭାବନ୍ତି - କାହିଁକି ପଢ଼ୁଛୁ ଆମେ ଏ ଖବରକାଗଜ ? ଏଥିରେ ଅଛି କ'ଣ ? ଏବେ ତ ସବୁ ସାମ୍ବାଦିକ ମାନଂକ ପାଇଁ ଅଖବର ହିଁ ମୁଖ୍ୟ ଖବର । ଅଶୀବର୍ଷର ବୃଦ୍ଧର ଅପ୍ରାପ୍ତବୟସ୍କା ନାତୁଣୀ ଉପରେ ବଳାତ୍କାର । ନିଜର ଯୌନଲାଳସା ଚରିତାର୍ଥ ନ ହେବାରୁ କ୍ଷୁବ୍‌ଧ ପିତାର କନ୍ୟା ହତ୍ୟା । ତିନୋଟି ସନ୍ତାନର ଜନନୀର ପ୍ରେମିକ ସହ ପଳାୟନ । ସିନ୍ଦୂରଦାବୀରେ ପ୍ରେମିକ ଘର ଆଗରେ ପ୍ରେମିକାର ଅନଶନ, ଜଣେ ଉଚ୍ଚପଦସ୍ଥ ଅଫିସରଙ୍କର ନିଜ ଭାଉଜ ସହ ଅବୈଧ ସଂପର୍କ ପାଇଁ ପତ୍ନୀଙ୍କୁ ଛାଡ଼ପତ୍ର । ଆଇନ ସହାୟତା ମାଗିବାକୁ ଯାଇଥିବା ଜଣେ ମହିଳାଙ୍କ ପ୍ରତି ଓକିଲଙ୍କର ଅସଦାଚରଣ, ଶିଶୁ ବେଶ୍ୟାବୃତ୍ତି କବଳରେ ବମ୍ବେ ସହର । ବିବାହ ନୁହେଁ ଲିଭିଂ ଟୁଗେଦର ଏବେ ରାଜଧାନୀ ଝିଅମାନଂକ ପହିଲି ପସନ୍ଦ ।

ଏହି ସବୁ ଖବର ପଢ଼ି ସାରିବା ପରେ ସୁଦର୍ଶନ ବାବୁ ଭାବନ୍ତି ଏସବୁ ଖବର ଗୁଡ଼ିକ ନିଶ୍ଚୟ ପଠନସୁଖ ହେଉଥିବ ଅନେକଂକୁ । ନଚେତ୍ ଏ ସବୁ ଖବରକୁ ବକସ ନ୍ୟୁଜ କରି କାହିଁକି ବାହାର କରନ୍ତେ ଖବର କାଗଜବାଲା । ମାତ୍ର ଏ ସବୁ ଖବରର ସମାଜ ଉପରେ ପଡୁଥିବା ପ୍ରଭାବ ଏବଂ ସାମାଜିକ ସଂପର୍କରେ ଏହାର କୁପରିଣାମ ବିଷୟରେ କେହି କେବେ ଥରେ ଚିନ୍ତା କରିଛନ୍ତି କି ? ଏହି ସବୁ କାର୍ଯ୍ୟ କିଛି ବିପଥଗାମୀ, ମାନସିକ ବିକାରଗ୍ରସ୍ତ କିମ୍ବା ଉନ୍ମାଦ ବ୍ୟକ୍ତି ବିଶେଷଙ୍କ ଦ୍ୱାରା ହେଉଥାଇପାରେ । ମାତ୍ର ଏହାକୁ ସମ୍ବାଦ କରିବାରେ ଯେଉଁ ଉନ୍ମାଦ ଦେଖାଯାଉଛି ତାହା କ'ଣ କମ୍ ବିକାର ଗ୍ରସ୍ତ ? ଏହା ତ ଆମର ପାରିବାରିକ ଓ ସାମାଜିକ ସଂପର୍କରେ ରହିଥିବା ବିଶ୍ୱାସର ଭିତ୍ତିଭୂମିକୁ ଦୋହଲାଇ ଦେଉଛି ।

ଅନେକ ଥର ଭାବିଛନ୍ତି ଏମିତି ଖବର ପଢ଼ି ମନକୁ ବିଷାକ୍ତ କରିବା ଅପେକ୍ଷା ଏକ ଖବରବିହୀନ ପୃଥ୍ୱୀରେ ରହିବା ବେଶ୍ ନିରାପଦ ଓ ସୁଖକର। କିଂତୁ ତାଂକର ସଡକ ଜାଣି ଗାଆଁରେ ଥିବା ପୁତୁରାଟି ଦୁଇତିନୋଟି ଖବରକାଗଜ ତାଂକ ପାଇଁ ମଗାଇଦେବା ସହ ତାଂକର ସକାଳର ଜଳଖିଆ ପର୍ବ ପରେ ପହଞ୍ଚାଇଦିଏ ତାଂକ ପାଖରେ। ଯେତେ ବିତୃଷ୍ଣା ଥିଲେ ବି ଖବରକାଗଜ ପ୍ରତି, ସାମ୍ନାରେ ଖବର କାଗଜ ଥୁଆ ହୋଇଥିଲେ ସେ ସମ୍ଭାଳ ପାରନ୍ତି ନାହିଁ ନିଜକୁ, ଧୀରେ ଧୀରେ ଓଲଟାନ୍ତି ଖବରକାଗଜ। ସେ ଦିନ ଖବର କାଗଜର ପ୍ରଥମ ପୃଷ୍ଠାର ବକ୍ସନ୍ୟୁଜ ପାଖରେ ଆଖି ତାଂକର ଅଟକି ଗଲା- "ଅବସରପ୍ରାପ୍ତ ଇଂଜିନିୟର ଦୀନବନ୍ଧୁ ପଟ୍ଟନାୟକଙ୍କର ଆତ୍ମହତ୍ୟା", ହେଡିଂଟି ପଢ଼ିସାରି ଗୋଟିଏ ବିସ୍ମୟରେ ସେ ସ୍ଥିର ହୋଇଗଲେ କିଛି ସମୟ। କେବଳ ମନକୁ ମନ କହିଲେ - ଆପଣ ଶେଷକୁ ଆତ୍ମହତ୍ୟା କରି ପକାଇଲେ ନା ଦୀନବନ୍ଧୁ ବାବୁ? ଆଉ କ'ଣ କୌଣସି ବିକଳ୍ପ ନଥିଲା ଆପଣଙ୍କ ଆଗରେ। ମାନୁଛି ଗାଆଁର ସବୁ ଜମିବାଡି ବିକି ଆପଣ ଭୁବନେଶ୍ୱରରେ ଘର କରିଦେଇଥିଲେ। ଯେଉଁ ପୁଅ ପାଇଁ ଆପଣ ଏସବୁ କରିଥିଲେ ସେ ପୁଅ ହୁଏତ...। କିଂତୁ ସେ ତ ଏମିତି ନଥିଲା?

ମନେ ପଡୁଛି ଦୀନବନ୍ଧୁ ବାବୁ - ଆମେ ଉଭୟ ତ ଗୋଟିଏ ବର୍ଷରେ ଅବସର ନେଇଥିଲେ। ଆମେ ଉଭୟ ସକାଳୁ ବିଳମ୍ବରେ ଉଠନ୍ତି ବୋଲି ଅବସର ପରେ ସାନ୍ଧ୍ୟ ଭ୍ରମଣର ନିଷ୍ପତ୍ତି ନେଇଥିଲେ। ସାନ୍ଧ୍ୟ ଭ୍ରମଣ ପରେ ଇନ୍ଦିରାପାର୍କରେ ବସି ଘଣ୍ଟା ଘଣ୍ଟା ଗପସପ କରି ବିତାଇଛନ୍ତି। ମୁଁ ବହୁବାର ଅନୁଭବ କରିଛି ଆମର ଆତ୍ମୀୟତା ସତ୍ତ୍ୱେ ବି ଆମେ ପରସ୍ପର ପାଖରେ ବିମୁକ୍ତ ହୋଇ ପାରୁନଥିଲେ। ଯାହାର କାରଣ ଏକମାତ୍ର ଥିଲା କେହି କାହାରି ଘରର ଗୁମର ପଦାରେ ପକାଇବାକୁ ଚାହୁଁନଥିଲେ। ହେଲେ ପ୍ରତିଦିନ ଦୁଃଖ ସୁଖ ଭିତରେ ଘରର ଗୁମର କେତେ ଦିନ ଭଲା ଲୁଚି ବସି ରହି ଥାଆନ୍ତା ଆମ ଭିତରେ ପରଦା ହୋଇ?

ପ୍ରଥମେ ଆପଣ ଖୋଲିଥିଲେ ଗୁମର - ଗୋଟିଏ ଦୀର୍ଘ ଶ୍ୱାସ ପକାଇ ଏକ ଦାର୍ଶନିକ ଢଂଗୀରେ। ବୁଝିଲେ ସୁଦର୍ଶନ ବାବୁ - ଏ ପୃଥିବୀ ଆଉ କିଛି ବର୍ଷ ପରେ ଏକ ସଂପର୍କ ହୀନ ଓ ଅବିଶ୍ୱାସର ପେଣ୍ଡୁ ପାଲଟିଯିବ। ସେଠି କେହି କାହାରି କିଛି ସଂପର୍କୀୟ ହେଉନଥିବେ। କେହି କାହାରି ପତ୍ନୀ ନୁହଁ, ପୁତ୍ର ନୁହଁ, ନାତି, ନାତୁଣୀ, ଭାଇବନ୍ଧୁ କିଛି ନୁହେଁ। ମଣିଷ ପାଲଟି ଯିବ ଆଦି ମାନବ ଏବଂ ସଂଗ୍ରାମ କରିବା କେବଳ ବଂଚିବା ପାଇଁ।

ମୁଁ ପ୍ରଶ୍ନ କରିଥିଲି - ହଠାତ୍ ଆପଣଙ୍କ ମୁଣ୍ଡକୁ ଏମିତିକା କଥା କାହିଁକି ଜୁଟିଲା ଦୀନବନ୍ଧୁ ବାବୁ?

ଏକଥା ହଠାତ୍ ଜୁଟିନି। ଧୀରେ ଧୀରେ ମୁଣ୍ଡରେ ପଶୁଛି, ଯେତେବେଳେ ସମସ୍ତ ବିଶ୍ୱାସ ଉପରେ ବିଶ୍ୱାସ ହରାଇ କେବଳ ଅବିଶ୍ୱାସର ବଳୟ ମଧ୍ୟରେ ମଣିଷ ବଂଚିବ, ସେତେବେଳେ

ଏଭଳି ଧାରଣା ଆସିବ ନାହିଁ ତ ଆଉ କ'ଣ ଆସିବ ?

ଆଜି ଆପଣ ଯେମିତି ଦାର୍ଶନିକ ତତ୍ତ୍ୱ କହୁଛନ୍ତି ମୁଁ କିଛି ବୁଝି ପାରୁନି।

ଦାର୍ଶନିକ ତତ୍ତ୍ୱ କହିବାକୁ ବାଧ ହେଉଛି, ଆମ ଭାଗବତରେ ପରା କୁହାଯାଇଛି, "ବିଶ୍ୱାସ ମୂଳେ ଏ ଜଗତ", ମାତ୍ର ବିଶ୍ୱାସ ଯେତେବେଳେ ତା'ର ମୂଳକୁ ହରାଇ ବସିବ ସେତେବେଳେ ଏ ଜଗତ ରହିବ ତ ?

କ'ଣ ହୋଇଛି ଦୀନବନ୍ଧୁ ବାବୁ ?

କ'ଣ ଆଉ ହୋଇଛି ବୋଲି ଆପଣଙ୍କୁ କହିବି ସୁଦର୍ଶନ ବାବୁ। ସେ କଥା ଯଦି କୁହେ ତେବେ ମୋତେ ଲାଗିବ ମୁଁ ପୁନଃ ଗୋଟିଏ ପାପ କରୁଛି ବୋଲି।

କିଂତୁ କୌଣସି ଗୋପନ ଦୁଃଖକୁ ଖୋଲି କହିଦେଲେ ମନ ହାଲକା ହୋଇଯାଏ।

ହଁ - ଭାବୁଛି ତ ଦୁଃଖକୁ ପ୍ରକାଶ କରିଦେବି ବୋଲି। କାରଣ ଏହା ମୋ ଭିତରେ ଏମିତି ଘାଣ୍ଟି ଚକଟି ହେଉଛି ଯେ ହୁଏତ ନକହିଲେ ମୁଁ ପାଗଳ ହୋଇଯିବି।

ଆପଣ ତ ମୋର ପରିବାର ବିଷୟରେ ଜାଣିଛନ୍ତି। ପତ୍ନୀ ତ ମୋ ରିଟାୟାରମେଣ୍ଟ ପୂର୍ବରୁ ଆଖି ବୁଜି ଦେଇଥିଲେ। ଆଉ ଆମର ପରିବାର କହିଲେ ମୁଁ, ମୋ ପୁଅ, ତା ସ୍ତ୍ରୀ ଓ ଛୋଟ ନାତୁଣୀଟି। ପୁଅ ବୋହୁ ତ ଉଭୟ ଚାକିରୀଆ। ଦଶଟା ବେଳେ ଅଫିସ ଯିବେ ଏବଂ ଆସିବେ ପାଞ୍ଚଟାରେ। ନାତୁଣୀଟି ସକାଳୁ ସ୍କୁଲ ଯିବ ଆସିବ ବାରଟାରେ। ସେ ସ୍କୁଲରୁ ଫେରିବା ପରେ ମୋର ଅବସର ସମୟତକ ପ୍ରାୟ ତା'ରି ସାଂଗରେ କଟିଯାଏ।

ଏଥିରେ ଅସୁବିଧା ରହିଲା କେଉଁଠି ?

ନା କିଛି ଅସୁବିଧା ନାହିଁ। ମାତ୍ର ଏବେ ଖବର କାଗଜରେ ଗୋଟେ ଖବର ବାହାରିଥିଲା ବୃଦ୍ଧଙ୍କର ଅପ୍ରାପ୍ତବୟସ୍କା ନାତୁଣୀ ଉପରେ ବଳାତ୍କାର ଉଦ୍ୟମ। ସେ ଖବରଟି ପଢ଼ି ମୋ ବୋହୁ ମାନସିକ ସ୍ତରରେ ଏମିତି ବିକାରଗ୍ରସ୍ତ ହୋଇ ପଡିଛନ୍ତି ଯେ ମୋର ନାତୁଣୀ ସହ ଅନ୍ତରଂଗତାକୁ ସେ ମୋତେ ସହଜ ଦୃଷ୍ଟିରେ ଦେଖି ପାରୁନାହାନ୍ତି।

ସେ କ'ଣ ଏ ବିଷୟରେ ଆପଣଂକୁ କିଛି କହିଲେ କି ?

ନା- କହିଥିଲେ ତ ଭଲ ହୋଇଥାଆନ୍ତା। ମାତ୍ର ସେ ମୋତେ ନକହି ମୋ ପୁଅକୁ କହିଲେ - ଭାବୁଛି ଝିଅକୁ ଏବେ କୌଣସି ବୋର୍ଡିଂ ସ୍କୁଲରେ ଛାଡ଼ି ଦେଲେ ଭଲ ହେବ।

ପୁଅ ଆଶ୍ଚର୍ଯ୍ୟ ହୋଇ ପଚରିଲା - କ'ଣ ପାଇଁ ?

କ'ଣ ପାଇଁ ପଚାରୁଛ ତ ଦେଖ ଏ ଖବର କାଗଜକୁ।

ପୁଅ ଖବର କାଗଜଟିକୁ ପଢ଼ିସାରି ଫିଙ୍ଗି ଦେଇ କହିଲା -ଗୋଟିଏ ବିକୃତ ମାନସିକତାର ଖବର ତାହାଲେ ତମର ମୁଣ୍ଡକୁ ବିକୃତ କରି ପକାଇଛି।

ଏ କାର୍ଯ୍ୟ ବିକୃତ ମାନସିକତାର କାର୍ଯ୍ୟ ହୋଇପାରେ ହେଲେ ଖବରଟି ତ ସତ୍ୟ ?

ହୋଇଥାଇ ପାରେ ।

ହଁ - ସେଇଥି ପାଇଁ ତ କହୁଛି ଝିଅକୁ କୌଣସି ବୋର୍ଡିଂ ସ୍କୁଲରେ ଛାଡ଼ି ଦେବା ପାଇଁ । ବାପା ମୃତଦାର, ଝିଅ ଓ ସେ ବହୁତ ସମୟ ଏକା ଘରେ ରହୁଛନ୍ତି । କିଏ କହିପାରିବ କେତେବେଳେ କେଉଁ କଥା ଘଟିବ ।

ତମର ମୁଣ୍ଡ ଫୁଣ୍ଡ ଠିକ୍ ଅଛି ତ ? ତମେ ଜାଣିପାରୁଛ ତ କ'ଣ କହୁଛ ବୋଲି ?

ମୋର ମୁଣ୍ଡ ପୂରା ଠିକ୍ ଅଛି ଏବଂ ମୁଁ ସଂପୂର୍ଣ୍ଣ ସୁସ୍ଥ ମସ୍ତିଷ୍କରେ ଏକଥା ଚିନ୍ତା କରି କହୁଛି ।

ପୁଅ ତାଙ୍କ ଉପରେ ବିରକ୍ତ ହୋଇ କଥାଟାକୁ ଏଡ଼ାଇ ଦେଲା ସିନା ମାତ୍ର ମୋ ଭିତରେ ଏକ ଅଗ୍ନି ବିସ୍ଫୋରଣ ଘଟିଲା ।

ତା' ପରଠାରୁ ମୁଁ ଅନୁଭବ କରୁଛି ମୋ ବୋହୂ ମୋତେ ତାଂକର ସନ୍ଦେହର କାଠଗଡ଼ାରେ ସବୁବେଳେ ଠିଆ କରି ରଖିଛନ୍ତି । ମୋର ପ୍ରତ୍ୟେକ କାର୍ଯ୍ୟକଳାପ ଉପରେ ନଜର ରଖିବା ସହ ଝିଅ ଉପରେ ମଧ ତୀକ୍ଷଣ ନଜର । ଅଫିସରକୁ ଫେରୁ ଫେରୁ ଝିଅକୁ ମାଗିବେ ଦିନ ବାରଟାରୁ ପାଞ୍ଚଟା ଯାଏଁର ଧାରା ବିବରଣୀ । ଚପଳମତି ନାତୁଣୀଟି ଯଦି କେବେ କହିଦିଏ ଜେଜେଙ୍କ ସାଂଗରେ ଖେଳୁଥିଲି କିଛି ସମୟ ସେ ଗୁମ୍ ମାରିଯାଇ ତାକୁ ପଚାରିବେ କ'ଣ ଖେଳୁଥିଲୁ ଜେଜେଙ୍କ ସହ ? କ'ଣ ବୋହୂଚୋରୀ, ଘୋଡ଼ା ଚଢ଼ା ନା ଆଉ କ'ଣ ?

ନା - ଆଜି ଆମେ ବରକନିଆଁ ଖେଳ ଖେଳୁଥିଲୁ ମୋ କଣ୍ଢେଇ ମାନଂକ ସହ ।

ତା'ପରେ ସେ ଆଉ କିଛି ପଚାରି ନ ଥିଲେ ସତ ମାତ୍ର ତାଂକ ଭିତରେ କେଉଁଠି ଗୋଟେ ଲାଗିଯାଇଥିଲା ସନ୍ଦେହର ନିଆଁ । ସେ ଦିନ ସନ୍ଧ୍ୟାରେ ମୋ ପାଇଁ ଚ' ଆଣି ଥୋଇବା ବେଳେ ସେ କହିଲେ - ବାପା, ମାମାର ରେଜଲଟ୍ ସେମିତି ଆଶାନୁରୂପ ହୋଇପାରୁନି । ସେ ସ୍କୁଲରୁ ଫେରି ବେଶୀ ସମୟ ଖେଳାଖେଳିରେ କଟାଉଛି । ମୁଁ କ'ଣ କହୁଥିଲି କି ଆପଣ ତା'ସାଂଗରେ ଆଉ ଏତେ ନ ଖେଳି ତାକୁ ପଢ଼ିବା ପାଇଁ ସ୍କୋପ୍ ଦିଅନ୍ତୁ ।

ମୁଁ ଜାଣିଥିଲି କଥାର ରହସ୍ୟ ଅଥଚ ଖୋଲି ପାରୁନଥିଲି ପାଟି, ତା'ପରଠାରୁ ମୁଁ ତା'ସହ ଖେଳିବା ବନ୍ଦ କରିଦେଲି ।

ଥରେ ନାତୁଣୀ ସ୍କୁଲ ଗଲାବେଳେ ବୋହୂ ତାକୁ ଆକଟ କରି କହିଲେ - ମାମା ତମେ ସ୍କୁଲ ଯିବା ଆସିବା ବେଳେ କାହାରି ଠାରୁ କୌଣସି ଜିନିଷ ନେବ ନାହିଁ ।

କାହିଁକି ?

କହିଲି ପା ନେବ ନାହିଁ - କାହିଁକିର ପ୍ରଶ୍ନ କାହିଁକି କରୁଛ ?

ମୁଁ ସ୍କୁଲ ଗଲାବେଳେ ତମେ ଟିଫିନ୍ ବକ୍ସ ଦେଉଛ, ତାକୁ ବି ନେବି ନାହିଁ?

ମୋ କଥା ନୁହଁ କୌଣସି ଅଜଣା ଅଶୁଣା ଲୋକଠାରୁ କିଛି ନେବ ନାହିଁ।

ନେଲେ କ'ଣ ହେବ?

ତମକୁ ଯେଉଁଟା କହିଲି କରିବ - ଏତେ ପଚାରି ଲାଭ କ'ଣ?

ମୁଁ ବୋହୂଙ୍କୁ କହିଲି - ତମ ଆକଟ ସଂପର୍କୀୟ କାରଣଟା ତାକୁ କହିନେଲେ ବରଂ ସେ ବେଶି ସତର୍କ ହୋଇଯିବ।

ବୋହୂ କଥା ବୁଲାଇ କି ତୀର ତ ନୁହେଁ ବେର୍ଚ୍ଛାଟିଏ ଫିଙ୍ଗିଲେ ମୋ ଛାତି ଉପରକୁ। ସବୁ ଆକଟର କାରଣ ତାକୁ କହିନେଲେ ତା'ର ଆଉ ଶୈଶବ ରହିବନି। ଚାହିଁକରି ମଧ୍ୟ ମୁଁ କ'ଣ ତାକୁ ସବୁ ଆକଟର କାରଣ କହିପାରିବି? ତେବେ ଏ ଆକଟର କାରଣ କହିବାରେ ମୋର କୌଣସି ଦ୍ୱିଧା ନାହିଁ।

କାରଣଟା କହିବାକୁ ଯାଇ ସେ ଖବରକାଗଜର ଯେଉଁ ନ୍ୟୁଜଟା ତାକୁ ଦେଖାଇଲେ ସେଥିରେ ସବୁ ଦାଢ଼ୀବାଲାଙ୍କ ପ୍ରତି ତା'ର ସୃଷ୍ଟି ହୋଇଗଲା ଭୟ।

ମୋ ପୁଅର ଜଣେ ଅଫିସ ସାଂଗ ସେ ଦାଢ଼ୀ ଛାଡ଼ିଥିଲେ। ସେ ଥରେ ରବିବାରର ଆମ ଘରକୁ ବୁଲି ଆସିଥିଲେ। ନାତୁଣୀ ପାଇଁ ଆଣିଥିଲେ ଚକୋଲେଟ୍ ପ୍ୟାକେଟଟିଏ। ସେ ଆସି ପହଞ୍ଚିବା ପରେ ଶ୍ରଦ୍ଧାରେ ନାତୁଣୀକୁ ଡାକିଲେ ତାଂକଠାରୁ ଚକୋଲେଟ୍ ନେବା ପାଇଁ। ମାତ୍ର ସେ ତାଂକ ହାତରୁ ଚକୋଲେଟ୍ ନେବ କ'ଣ ଦୌଡ଼ି ଦୌଡ଼ି ଯାଇ ମାଆ ପଛରେ ଲୁଚିଯାଇ କହିଲା - ମାଆ ପିଲା ଚୋର, ପିଲା ଚୋର।

ସେ ଲୋକ ଜଣଙ୍କ କେବଳ ହତବାକ୍ ହେଲେ ନାହିଁ ମର୍ମାହତ ମଧ୍ୟ ହେଲେ, ସେଥିପାଇଁ ଆମକୁ ବୁଝାଇବାକୁ ପଡିଲା ଘଟଣାଟି କ'ଣ।

ତା'ପରେ ବହୁ ସନ୍ଧ୍ୟାରେ ଆମେ ଦୁଃଖ ସୁଖ ହୋଇଛେ, ଆପଣ ମୋତେ ଯେଉଁଦିନ ସୁଖି ବୋଲି କହିଲେ - ସେ ଦିନ ମୁଁ ଖୋଲିଥିଲି ମୋ ଦୁଃଖର ପସରା। କହିଥିଲି ଚାକିରି କାଳ ମଧ୍ୟରେ ଭୁବନେଶ୍ୱରରେ ରହି କିଏ କେତେ କ'ଣ କରିଛନ୍ତି, ହେଲେ ମୁଁ ସେସବୁ ଦିଗ ପ୍ରତି ଧ୍ୟାନ ନ ଦେଇ କେବଳ ଚିନ୍ତାକଲି ପିଲାମାନଂକୁ ମଣିଷ କରିବା ପାଇଁ। ବଡ଼ ପୁଅ ଇଂଜିନିୟର, ଆଇ.ଆଇ.ଟି.ରେ ଅଧ୍ୟାପକ, ସାନ ପୁଅ ଡାକ୍ତର ଭୁବନେଶ୍ୱରରେ। ଝିଅ ଅଧ୍ୟାପିକା ହୋଇଥିଲା, ବାହାହେବା ପରେ ସ୍ୱାମୀ ସହ ବିଦେଶ ଯିବାରୁ ଏଠି ଚାକିରି ଛାଡ଼ି ଦେଇ ସେଠି ଚାକିରି କରୁଛି, ଲୋକେ ମୋର ସନ୍ତାନ ସନ୍ତତିଙ୍କ କୃତିତ୍ୱକୁ ମୋର କୃତିତ୍ୱ ବୋଲି ଭାବିଲେ।

ମାତ୍ର ମୋର ଦୁଃଖ କେବଳ ଏତିକି ରହିଲା ଯେ ରିଟାୟାର୍ଡ ପରେ ଆଉ ଆମକୁ କେହି ପଚରିଲେ ନାହିଁ, ଯେହେତୁ ମୁଁ ପେନ୍‌ସନ୍ ପାଉଥିଲି ଆମେ କାହାରି ଉପରେ ଆର୍ଥିକ ଦୃଷ୍ଟି କୋଣରୁ ବୋଝ ନ ଥିଲୁ। ମାତ୍ର ଆଜିକାଲି ସଂପୂର୍ଣ୍ଣ ନ୍ୟୁକ୍ଲିଅସ୍ ଫାମିଲିରେ ରହି ଅଖଣ୍ଡ ସ୍ୱାଧୀନତା ଚାହୁଁଥିବା ବୋହୂମାନଙ୍କ ପାଇଁ ଆମେ ବୁଢ଼ାବୁଢ଼ୀ ଥିଲୁ କଣ୍ଟା ସଦୃଶ। ଯେହେତୁ ସାନ ପୁଅ ଭୁବନେଶ୍ୱରରେ ଥିଲା ଆମେ ତା'ପାଖରେ ରହିବା ସ୍ୱାଭାବିକ। ମାତ୍ର ଶାଶୁ ବୋହୂଙ୍କର ଆଦୌ ପଡ଼ିଲା ନାହିଁ। ଅବସ୍ଥା ଅଣାୟତ୍ତ ହେବା ପୂର୍ବରୁ ମୁଁ ଚାହୁଁଥିଲି ଏକ ସମ୍ମାନଜନକ ପ୍ରସ୍ଥାନ। ମୁଁ ଗୋଟେ ବିକଳ୍ପର ସନ୍ଧାନରେ ଥିବା ବେଳେ ଗାଆଁରେ ରହୁଥିବା ମୋ ସାନଭାଇ ପ୍ରସ୍ତାବ ଦେଲା ଗାଆଁକୁ ଚାଲି ଆସିବା ପାଇଁ। ପୁଅମାନେ ନ ପଚାରିଲେ ନାହିଁ, ପୁତୁରାମାନେ ତ ଅଛନ୍ତି।

ସେହି ଏକା ଭାଗ୍ୟ ହୋଇପାରେ ଗାଆଁକୁ ଆସିଲେ ଭାବି ମୁଁ ଟିକିଏ ଦ୍ୱନ୍ଦରେ ଥିଲି। ତେଣୁ ସାନଭାଇକୁ କହିଲି ମୁଁ ଯଦି କାହାରି ଉପରେ ବୋଝ ନ ହୋଇ ଗାଆଁରେ ସ୍ୱାଧୀନ ଭାବରେ ରହେ ତୋ'ର ଆପତ୍ତି ଅଛି କି ?

ସେ କହିଲା - ତମେ ତ ନିଜେ କହିଥିଲ ଆମେ ଦୁଇଭାଇ, ଜଣେ ଗାଆଁରେ ରହୁଛି, ଜଣେ ବାହାରେ, ତେଣୁ ବଂଚିଥିବା ଯାଏଁ ଘରେ ପାଚେରୀ ବସିବ ନାହିଁ। ନିଜ କର୍ମ ନେଇ ନିଜେ ରହିବା। ମାତ୍ର ପରସ୍ପରର ସୁଖ, ଦୁଃଖ, ଦାୟଦର୍କାରରେ ଠିଆ ହେବା। ସେହି କଥାକୁ ତ ମୁଁ ଆଜିଯାଏ ମାନି ଆସିଛି। ଆଉ ଏବେ ଯଦି ତମେ ଚାହୁଁଛ ଘରେ ପାଚେରୀ ବସୁ, ଏଇଟା ତମର ଖୁସି। ମାତ୍ର ମୁଁ କଥା ଦେଉଛି ଯଦି ତମର ଗାଆଁରେ ରହିବାର କୌଣସି ଅସୁବିଧା ଦେଉଛି ବୋଲି ମୁଁ ଉପଲବ୍‌ଧି କରିବି, ତେବେ ତମର କହିବା ଦରକାର ନାହିଁ ମୁଁ ତମ ପାଇଁ ଅଲଗା ରହିବାର ବ୍ୟବସ୍ଥା କରିଦେବି। ତା'କଥାରେ ଭରସା ରଖି ଚାଲିଆସିଲି ଯେ ଆଉ ଫେରିବାକୁ ମନ କରିନି ପୁଅମାନଂକ ପାଖକୁ। ମୁଁ ମାନୁଛି ତମ ପାଇଁ ଗାଆଁକୁ ଫେରିଯିବାର ରାସ୍ତା ନଥିଲା। ମାତ୍ର ଆତ୍ମହତ୍ୟା ତ ଏକମାତ୍ର ରାସ୍ତା ନଥିଲା ?

ନିଜ ସ୍ମୃତିଚାରଣରୁ ବିରତି ନେଇ ଖବରଟିକୁ ପଢ଼ିବାକୁ ଲାଗିଲେ ସୁଦର୍ଶନ ବାବୁ। ଇଂ ଦୀନବନ୍ଧୁ ପଟ୍ଟନାୟକଙ୍କ ମୃତ୍ୟୁର ରହସ୍ୟ କିଛି ଜଣାପଡି ନଥିଲେ ମଧ ତାଂକ ମୃତ୍ୟୁର ପୂର୍ବରୁ ସେ ଲେଖିଯାଇଥିବା ସୁଇସାଇଡ୍ ନୋଟଟି ବହୁମାତ୍ରାରେ ରହସ୍ୟ ପୂର୍ଣ୍ଣ। "ବିଶ୍ୱାସ ଓ ଅବିଶ୍ୱାସର ପୃଥିବୀ ମଧ୍ୟରେ ମୋର ଅବସ୍ଥା ଏଇନେ ତ୍ରୀଶଂକୁଙ୍କ ଅବସ୍ଥା ପରି, ଏଠି ଏବେ ବଦଳି ଯାଇଛି ସଂପର୍କର ପରିଭାଷା। ମୁଁ, ତୁମେ, ସେ, ସେମାନେ ଏବଂ ଆମେ ସମସ୍ତେ ଏଇନେ ଠିଆ ହୋଇଛନ୍ତି ପରସ୍ପରର ସନ୍ଦେହର କାଠଗଡ଼ାରେ, ନିଜକୁ ନିଜର ଜମାନବନ୍ଦୀ ଦେଇ ଦେଇ ଥକି ପଡିବା ପରେ ମୋର ପାଖରେ ଆଉ କୌଣସି ବିକଳ୍ପ ଅଛି ବୋଲି ମୁଁ

ଭାବି ପାରୁନି। ଦୋହଲି ଯାଇଥିବା ବିଶ୍ୱାସର ଭିତ୍ତିଭୂମିରେ ନା ପରିବାର ଗଠନ କରିହେବ ନା ସମାଜ। ତେଣୁ ଏପରି ଏକ ପରିବେଶରୁ ମୁକୁଳି ଯିବା ପାଇଁ ମୁଁ ଯାହା କରିବାକୁ ଯାଉଛି ତାହା ହୁଏତ ଅନ୍ୟ ମାନଂକ ଆଖିରେ ଆତ୍ମହତ୍ୟାର ରୂପ ନେଇପାରେ - ମାତ୍ର ଏହା ମୋର ଆତ୍ମହତ୍ୟା ନୁହଁ । ଏହା ମୋର ଅନ୍ୟ ଏକ ପୃଥ୍ୱୀର ଅନ୍ୱେଷା।"

ଖବରଟି ପଢ଼ି ସାରିବା ପରେ ସୁଦର୍ଶନ ବାବୁଙ୍କ ପାଟିରୁ କେବଳ ବାହାରିଲା - ଦୀନବନ୍ଧୁ ବାବୁ, ଆପଣଙ୍କ ଅନ୍ୱେଷା ସଫଳ ହେଉ ଏବଂ ଆପଣଙ୍କ ଆତ୍ମା ଶାନ୍ତି ପାଉ।

* * *

## ।। ଏ ମଣିଷକୁ ମାଓ କଲା କିଏ ।।

ଗାଆଁ ମୁଖିଆ ଖବର ଦେଲା, କାତ୍ରାମାଲ ଡଂଗରର ଚରଚରାଠି ସଭା ହେବ । ଲାଲ ପାର୍ଟି ବାଲାଏ ସଭା କରିବେ, ଆମ ଗାଆଁର ସଭିଂକୁ ନବାର ଦାୟିତ୍ୱ ମୋ ଉପରେ, ବୁଝିଲ - ସଭିଏଁ ଯିବ,କେହି ନାହିଁ କରି ପାରିବ ନାହିଁ।

କି ସଭା କରିବେ ?

ଏଇ ଆମର ଭଲ, ମନ୍ଦ, ଦୁଃଖ ସୁଖ ବିଷୟରେ ସଭାରେ ଆଲୋଚନା କରିବେ।

ଆମର ଭଲ, ମନ୍ଦ, ଦୁଃଖ-ସୁଖ ଗୋଟାଏ କ'ଣ ? -ପଚାରିଲା କିଶୁ ଓରାମ।

ଆରେ ତୁଇ ସହର ଦେଖିଛୁ - ସହର ?

ହଇ, କେତେ ବାର ଯାଇଛି, କ'ଣ ଥରେ ନା ଦି'ଥର।

ସେଠି ଲୋକ କେନ୍ତା ରହୁଛନ୍ତି ?

କେନ୍ତା ରହୁଛନ୍ତି ମାନେ !

ମାନେ ସୁଖରେ କି ଦୁଃଖରେ।

କିଏ କହିପାରିବ - ସୁଖରେ ବି ଥିବେ, ଦୁଃଖରେ ବି ଥାଇପାରନ୍ତି। ସେଠି ଲୋକଂକୁ ଯେନ୍ତା ସୁବିଧା ସୁଯୋଗ ମିଳୁଛେ, ଆମର ଏଠି ସେନ୍ତା ଅଛି କାଏଁ ?

ସେଇଟା ପରା ସହର, ଏଇଟା ପରା ଗାଆଁ, ଗାଆଁ ତ ଗାଆଁ ପୁଣି ଡଂଗର ଭିତରର ଗାଆଁ, ଏଠି ସେନ୍ତା ସୁବିଧା କେନ୍ ଆଡୁ ଆସିବ ?

ହଁ - ସେଇ କଥା, ସବୁ ମଣିଷଙ୍କୁ ବରାବର ସୁବିଧା ଦେବା ଲାଗି ଏ ସଭା ହେଉଛି।

ତାହାଲେ ଆମ ଗାଆଁଟିବି ସହର ହେବନା ?

ସେ କଥା ମୁଇଁ ନାଇଁ ଜାଣେ, ହେଲେ ଏତିକି ଜାଣିଛି ଆମ ମାନଂକର ସୁବିଧା ପାଇଁ ଡକା ହୋଇଚି ସଭା, ଚାଲ ଯାଇ ଦେଖମା, କ'ଣ ହେଉଛି ସଭାରେ, କ'ଣ କ'ଣ ସୁବିଧା

ହେବ ଆମ ମାନଂକର। ହଁ- ସମସ୍ତେ ଗଲାବେଳେ ଯେଝା ଯେଝା ଧନୁତୀର ଓ ଫାର୍ଶା ନେଇ ସାଥିରେ ଯିବ।

ଧନୁତୀର କ'ଣ ପାଇଁ - ସେଠି କ'ଣ ଶିକାର ହେବକି ?

ନାଇବୋ - ସେଠି ଶିକାର ହେବନି। ଆମେ ଆଦିବାସୀ ନା, ଆମର ପରିଚୟ କେନ୍ତା ମିଳିବ, ଯଦି ଆମେ ଆମର ଅସ୍ତ୍ରଶସ୍ତ୍ର ନାଇଁ ଧରିକରି ଯିମା।

କିଶୁ ଘରକୁ ଫେରି ସଜିଲ କଲା ତା'ର ଧନୁତୀର ଓ ଫାର୍ଶାକୁ। ପଥରରେ ଘଷି ଫାର୍ଶାକୁ କଲା ଚକ୍ ଚକ୍ ଓ ତୀରରେ ଦେଲା ଶାଣ। ଦୁପଦୀ ପଚାରିଲା - ଶିକାର ଶିକୁରା କରିବାକୁ ଯିବ କାଏଁ ?

ନାଇଁବୋ - ସଭା କରିବେ ତ ବୁଲାଇଛନ୍ତି, ସେଠିକୁ ଯିବି।

କି ସଭା ?

ମୁଇଁ କ'ଣ ଠିକ୍ କରି ଜାଣେ କି ସଭା, ହେଲେ ମୁଖିଆ କଗୁଥିଲା ଆମର ଭଲ ମନ୍ଦ ବିଷୟଥି ସଭା ହେବ।

ମୁଇଁ ଭାବିଥିଲି ତୁଇ ଶିକାର କରି ବାହାରିଛୁ, ମାଂସ ପୁଟେ ପାଇଁ ମନ ଡାକୁ ଥିଲା, ବାରହା କି ଠେକୁଆଟିଏ ମାରି କରି ଆଣିଥାଆନ୍ତୁ।

ହଉ ହେଲା, ତୋ'ର ପିଲାପିଲି ହବତ, ମନ ବଳାଉଥିବ ଶିକାର ଖାଇବାକୁ, ଫେରିବା ବେଳକୁ ଦେଖିବି, ଯଦି ଭାଗ୍ୟରେ ଥାଏ ଜୁଟିଯିବ ପଟେ ଶିକାର, ନହିଲେ କାଲିକୁ ନିଶ୍ଚେ ଶିକାର କରିବି।

କିଶୁ ଭାବିଥିଲା ଅନ୍ୟ ସଭାମାନଂକୁ ଗଲା ଭଳି, ଗାଆଁ ଡେଇଁ ରାସ୍ତାକୁ ଆସିଗଲେ ଥିବ ଗାଡିମଟର, ବୋହିନେବ ସଭା ସ୍ଥଳକୁ। ସଭା ଚାଲିଥିବା ବେଳେ ପଡିବ ପଂଗତ - ଭାତ, ଡାଲି, ମାଉଁସର। ଭୋଟ ଚିହ୍ନ ସବୁ ଚିହ୍ନାଉଥିବେ - ହାତ, ଫୁଲ, ଧନୁତୀର, ଆହୁରି କେତେନା କେତେ ଚିହ୍ନ। ସଭାକୁ ଯାଇ ଖାଇ ପିଇ ଦିଏ ସିନା, ହେଲେ କେବେ ବି ମନେ ରଖି ପାରେନା ସଭାରେ କିଏ କ'ଣ କହିଲା, କେଉଁ ଚିହ୍ନରେ ଭୋଟ୍ ଦେବ ବୋଲି, ଭୋଟ ଦିନ ଗାଆଁ ମୁଖିଆ ଯେଉଁ ଚିହ୍ନାରେ ଭୋଟ୍ ଦେବାକୁ କହେ, ସିଏ ମାରିଦିଏ ସେଇଠି ମୋହର। ହେଲେ ଏ ସଭାକୁ ଯିବାକୁ ଗାଡିମଟର ତ ନାହିଁ ନାହିଁ, ବାଟ ନୁହେଁ କେବଳ ଅବାଟରେ ସେ ଧାଇଁଛି ମୁଖିଆ ପଛେ ପଛେ, ଡେଇଁଲାଣି ପାହାଡ଼, ଡଂଗର, ପାରି ହେଲାଣି ଝରଣା, ତଥାପି ଦିଶୁନି ରାସ୍ତାର ନାଆଁ ଗନ୍ଧ, କେବଳ ପେଲି ହୋଇ ଚାଲିଛନ୍ତି ଜଂଗଲ ଭିତରେ ଭିତରେ। ଚାଲି ଚାଲି ପାଦ ଥକି ଯିବାରୁ ସେ ମୁଖିଆକୁ ପଚାରିଲା - ଆଗେ ତ ସବୁ ସଭା ଭଲ ଭଲ ଜାଗାଥି ହେଉଥିଲା, ଗାଡି ମଟର ଆସି ବୋହି ନେଉଥିଲା, ହେଲେ ଏଇଟା କି ସଭା କି ଜଂଗଲ ଭିତରେ ହେଉଛି ?

ମୁଖିଆ କହିଲା - ତୁ ବୁଝିପାରିବୁନି, ଆଗେ ଯେଉଁ ସଭାକୁ ତୁ ଯାଇଥିଲୁ ସେସବୁ ଥିଲା ନେତାଂକ ସଭା, ଏଇଟା ନେତାଂକ ସଭା ନୁହେଁ, ଆମରି ଭଲପାଇଁ ଆମରି ଲୋକଂକ ସଭା।

କିଶୁ ବୁଝି ପାରୁନଥିଲା କି ଭଲ ତାଂକର କରିବେ ବୋଲି ହେଉଛି ସଭା, ହେଲେ ମୁଖିଆକୁ ଆଉ ପ୍ରଶ୍ନ ନ ପଚାରି କେବଳ ଅନୁସରଣ କରୁଥିଲା ତାକୁ। ସଭାଠି ପହଂଚିଲା ବେଳକୁ ତ'ମନ ଫିକା ପଡ଼ିଗଲା। ନା-ମାଇକ୍, ନା ବାଜା ନା ବାଣ, ଗୋଟିଏ ମୁଣ୍ଡିଆ ଉପରେ ଜଣେ ବସି ବଡ଼ ପାଟିରେ କ'ଣ ସବୁ ଗପିଲା। ସରକାର ଗୋଟେ କିଏ ତା'ରି ବିରୁଦ୍ଧରେ ଢ଼େର କହିଲା, ପୋଲିସ୍ ଆମର ଶତ୍ରୁ ବୋଲି ବୁଝାଇଲା। ବଡ଼ ବଡ଼ ଧନୀ ଲୋକମାନେ ମଶା ଓ ଡାଆଁସ ପରି ଆମ ମାନଂକର ରକ୍ତକୁ ଶୋଷୁଛନ୍ତି। ଆମର ଅଧିକାରକୁ ଆମଠୁ ଛଡ଼ାଇ ନେଇ ସେମାନେ ମଉଜରେ ଅଛନ୍ତି। ଏହାର ପରିବର୍ତ୍ତନ ଦରକାର, ଆମ ଅଧିକାର ଆମେ ପାଇବା ଦରକାର। ହେଲେ ସେମାନେ ଏତେ ସହଜରେ ଏବଂ ସରଳ ଭାବରେ ଆମର ଅଧିକାର ଆମକୁ ଦେବେ ନାହିଁ। ଏ ଅଧିକାର ହାସଲ ପାଇଁ ଆମକୁ ସଂଗ୍ରାମ କରିବାକୁ ପଡିବ। ଏ ସଂଗ୍ରାମ ହେବ ରକ୍ତାକ୍ତ ସଂଗ୍ରାମ।

କିଶୁ କିଛି ବୁଝି ପାରୁନଥିଲେ ମଧ ତାକୁ ଭଲ ଲାଗୁଥିଲା ସେ କଥା ଶୁଣିବାକୁ। ସମସ୍ତେ ଯେତେବେଳେ ଜିନ୍ଦାବାନ୍ କହି ହାତର ଧନୁତୀରକୁ ଉପରକୁ ଉଠାଉଥିଲେ, ସିଏ ବି ସମସ୍ତଙ୍କ ସ୍ୱରରେ ସ୍ୱର ମିଳାଇ କେତେବେଳେ ଧନୁତୀର ତ କେତେବେଳେ ଫାର୍ଶାକୁ ଉଠାଇ ଜିନ୍ଦାବାଦ କରୁଥିଲା।

ସଭା ଚାଲିଥିବା ସମୟରେ କିଏ ଜଣେ ସେଇ ଭାଷଣ ଦେଉଥିବା ଲୋକଟା କାନରେ କ'ଣ କହିଲା, ସେ ତତ୍କ୍ଷଣାତ୍ ଭାଷଣ ବନ୍ଦ କରି କହିଲା - ଭାଇମାନେ, ଆମର ଏ ସଭାର ଖବର ପାଇ, ପୁଲିସ ବାଲାଏ ଜଂଗଲକୁ ଘେରାଉ କରୁଛନ୍ତି, ଆପଣମାନେ ଏବେ ଯେଝା ଯେଝା ଘରକୁ ଫେରି ଯାଆନ୍ତୁ। ପୁଣି ଯେତେବେଳେ ଡକା ହେବ ଆସିବେ।

ସଂଗେ ସଂଗେ ସଭା ବନ୍ଦ କରି ସେମାନେ ଦୌଡି ଚାଲିଲେ ଘଂଚ ଜଂଗଲ ଭିତରକୁ। କିଶୁ ଚାହିଁଲା ମୁଖିଆ ଆଡ଼େ, ମୁଖିଆ କହିଲା - ଚାଲ, ବେଗି ବେଗି ଚାଲ, ଏଠି ରହିଲେ ବିପଦ।

କିଶୁ ପଚାରିବା ପଚାରିବା ଦୃଷ୍ଟିରେ ଚାହିଁଲା ମୁଖିଆ ଆଡ଼େ - ଯାହାର ଅର୍ଥ ଥିଲା ଏଠି ଖାନା ପିନା କିଛି ନାହିଁ।

ମୁଖିଆ ତା'ର ମନୋଭାବ ବୁଝି କହିଲା - ଏସବୁ ସଭାରେ ଖିଆପିଆ ହୁଏନି, ଚାଲ ଚାଲ, ଜଲଦି ଏଠୁ ଚାଲ, ନଚେତ୍ ବିପଦ ପଡିପାରେ।

ମୁଖିଆ ବୋ - ଏତେ ବାଟ ତ ଆସିଲେ, ଖାଲି ଖାଲି ଘରକୁ ନଫେରି ଶିକାର ଶିକୁରାଟିଏ କରିଗଲେ କେନ୍ତା ହୁଅନ୍ତା ? ଧନୁତୀର ତ ଅଛି।

ତୁଇ ଚାଲୁଛୁ ନା, ତତେ ଏବେ ବେଳ ପଡିଛି ଶିକାର କରିବାକୁ ?

ନାଇଁ ବୋ, ଦ୍ରୁପଦୀର ପିଲାପିଲି ହବାର ଅଛି ତ, ଶିକାର ଖାଇବାକୁ ମନ କରିଛେ, ହେଉଥିପାଇଁ କହୁଥିଲି ବାରହା ପଟେ ଶିକାର କରିବାକୁ।

ଚାଲ-ଚାଲ, ଶୁଣିଲୁନି ପୋଲିସ୍ ଘେରିଛନ୍ତି ଜଂଗଲ ଚାରିପଟେ, ଧରିନେଲେ ଶିକାର କ'ଣ ଖାଇବୁ, ମାମୁଁ ଘରେ ଚକି ପେଷିବୁ।

ଆମେ କ'ଣ କଲୁ ଯେ ପୋଲିସ୍ ଆମକୁ ଧରିନେବ ?

ତତେ ମୁଇଁ ନାଇଁ ବୁଝାଇପାରେ - ତୁ କିଛି ନପଚାରି ବେଗି ବେଗି ଚାଲ ତ, ଗାଆଁ ଧଇଲେ ଯାଇଁ ଯେଉଁ କଥା।

ଝରଣା ପାରି ହେଉ ହେଉ ହଠାତ୍ ଶୁଭିଲା ଗୁଳିର ଶବ୍ଦ। ଇଲୋ ବୁଆଲୋ କହି ତେଇଁ ପଡିଲା କିଶୁ। ସାମ୍ନାରେ ଠିଆ ହୋଇଥିଲେ ପୋଲିସ୍ ଦଳ। ଧର - ଧର ଏ ମାଓବାଦୀଙ୍କୁ। ଆଦେଶ ପାଇବା କ୍ଷଣି ବନ୍ଧୁକ ମୁହାଁଇ ଧାଇଁ ଆସିଲେ ଦଳେ ପୋଲିସ୍। ଆଉ କିଛି ପଚରା ଉଚୁରା ନାହିଁ ହାତରେ ପକାଇଲେ ହାତ କଡି।

ମୁଖିଆ ପଚାରିଲା - ଆମର କସୁର କ'ଣ ମହାପ୍ରୁ ?

କସୁର ! କସୁର କ'ଣ ପଚାରୁଛୁ, ଶଃ, ମାଓବାଦୀ କାର୍ଯ୍ୟ କରି ଧରାପଡିବାରୁ ଭଲେଇ ହୋଇ ପଚାରୁଛି କସୁର କ'ଣ ?

କିଶୁ ବୁଝି ପାରୁନଥିଲା କିଛି, ମୁଖିଆ କଥାରେ ତ ସେମାନେ ସଭାକୁ ଯାଇଥିଲେ, ମାଓବାଦୀ କାର୍ଯ୍ୟ କ'ଣ କଲେ ? ହେଲେ ମୁଖିଆ ଯାହା ବୁଝାଉଥିଲେ ବି ତା'କଥା ବୁଝିବାକୁ ପୋଲିସ୍ ବାଲା ପ୍ରସ୍ତୁତ ନଥିଲେ।

ସେମାନଂକୁ ସିଧା ଗାଡିରେ ବସାଇ ଅଣାଗଲା ଥାନା, ଥାନାରୁ କୋର୍ଟ। ଥାନା ପାଖରୁ କୋର୍ଟ ଯାଏ ସେମାନଂକୁ ଘେରି ରହିଥିଲେ ଦଳ ଦଳ ସାମ୍ବାଦିକ, ଉଠାଯାଉଥିଲା ଫଟୋ, ହେଲେ ଫଟୋ ଉଠା ଦେଖି କେହି ଜଣେ ପୋଲିସ୍ ବାଲା ସାମ୍ବାଦିକଙ୍କୁ ବାରଣ କରି ସେମାନଂକ କାନ୍ଧରେ ପଡିଥିବା ଗାମୁଛାରେ ଢାଙ୍କି ଦେଲା ସମସ୍ତଙ୍କ ମୁହଁ, ତା'ପରେ କହିଲେ ଏବେ ଉଠା ଯେତେ ପାରୁଛ ଫଟୋ ଉଠାନ୍ତୁ, କମ୍ବିଂ ଅପରେସନ୍‌ରେ ଆଜିଯାଏଁ ପୋଲିସ୍‌କୁ ଯେତେ ସଫଳତା ମିଳିଥିଲା, ଇଏ ସବୁଠୁ ବଡ଼ ସଫଳତା। ଏକ ସମୟରେ ଏତେ ଜଣ ମାଓବାଦୀ ଗିରଫ ହେବ ଏଇ ପ୍ରଥମ।

କୋର୍ଟରୁ କଡ଼ା ସୁରକ୍ଷା ମଧ୍ୟରେ ସେମାନଂକୁ ନିଆଗଲା ଜେଲ, ଜେଲ ଭିତରେ ପଶୁ ପଶୁ କିଶୁ ପଚାରିଲା ମୁଖିଆକୁ - ଆମର ଦୋଷ କ'ଣ ? ଆମକୁ କାହିଁକି ଜେଲରେ ପୁରାଇଲେ ?

ଦୋଷଟା କ'ଣ ମୁଁ ଜାଣିଥିଲେ ତ ତତେ କହନ୍ତି, ରହ, ସବୁର କର, କ'ଣ ହେଉଛି ଦେଖିବା ।

ଆମେ ଜେଲରୁ କେବେ ମୁକୁଳିବା ?

କିଏ ଜାଣେ ।

ଦୁ୍ପଦୀର ପିଲା ହବାର ଅଛି, ମାଂସପୁଟେ ପାଇଁ ମନ କରିଥିଲା । ଆଗେ ଏଠୁ ମୁକୁଳିବା କଥା ଚିନ୍ତା କର, ପିଲା ହବାର ଥିଲା, ମାଂସ ଖାଇବାକୁ ମନ କରିଥିଲା ଭାବି ଲାଭ କ'ଣ ?

ଦିନ ପରେ ଦିନ, ମାସ ପରେ ମାସ ବିତୁଥିଲା, ଥରକୁ ଥର ପୁଲିସ୍ ଭ୍ୟାନ୍‌ରେ ସେମାନଂକୁ ନିଆଯାଉଥିଲା କୋର୍ଟ, ମାତ୍ର ପ୍ରତିଥର ସେମାନଂକର ମୁକୁଳିଯିବାର ସ୍ୱପ୍ନ ଭାଂଗି ଯାଉଥିଲା । କୋର୍ଟରେ ସେମାନଂକ ବିରୁଦ୍ଧରେ ଲାଗିଥିବା ଅପରାଧର ଧାରା ପାଇଁ,ସନ୍ଦିଗଧ ମାଓବାଦୀ କାର୍ଯ୍ୟକଳାପ ସହ ଅସ୍ତ୍ରଶସ୍ତ୍ର ରଖିବାର ଅପରାଧ ପାଇଁ ସେମାନଂକୁ ମିଳୁ ନଥିଲା ବେଲ୍ । ନିଜ ପରିବାର ଓ ଆତ୍ମୀୟ ସ୍ୱଜନଙ୍କୁ ସାକ୍ଷାତ ପାଇଁ ବି ମିଳୁ ନଥିଲା ସୁଯୋଗ । ସୁଯୋଗ ମିଳିଲେ ବା କ'ଣ ହୁଅନ୍ତା - ଦୁ୍ପଦୀ କ'ଣ ଜାଣେ ଯେ ସେ କେଉଁଠି ଅଛି ? ଜାଣିଲେ ବି ଅସଜ ମଣିଷଟା ବା ଆସି ପାରିବ କୁଆଡୁ ?

ଦୁ୍ପଦୀର ପିଲା ହେଲା, ଜାଣି ପାରିଲାନି କିଶୁ, ମାସ ଗଣି ସେ ହିସାବ କରୁଥିଲା ପିଲା ଜନ୍ମ ହୋଇ ସାରିଥିବ । ପୁଅ କି ଝିଅ - କ'ଣ ହୋଇଥିବ ? ଯଦି ପୁଅ ହୋଇଥାଏ ତେବେ ତା'ପରି ହୋଇଥିବ, ଝିଅ ହୋଇଥିଲେ ନିଶ୍ଚେ ଦୁ୍ପଦୀ ପରି, ଜେଲ୍‌ରେ ଥାଇ ପ୍ରାର୍ଥନା କରୁଥିଲା - ପୁଅ ହୋଇଥାଉ କି ଝିଅ, ମାଅ ଡଂଗରାଣୀ ତାକୁ ଭଲରେ ରଖିଥାଆନ୍ତୁ ।

ମାସ ପରେ ମାସ ଯାଇ ଏହା ଭିତରେ କେତେ ମାସ ଗଲାଣି ତା'ର ହିସାବ ରଖି ପାରି ନଥିଲା କିଶୁ, ମୁଖିଆ ଠାରୁ କେବଳ ଶୁଣେ କେଉଁ ଗୋଟେ ସଂସ୍ଥା ତାକୁ ମୁକୁଳାଇବା ପାଇଁ ଲଢୁଛି ସରକାରଙ୍କ ସାଂଗରେ, ହେଲେ କିଶୁ ଭରସା କରି ପାରୁନଥିଲା ଏମିତିକା କଥାକୁ ଆଉ । କେବଳ ଗୋଟେ ଅବୁଝା ରହସ୍ୟ ନେଇ ମନକୁ ମନ ପ୍ରଶ୍ନ କରୁଥିଲା - ନା ସେ ଚୋରୀ କରିଛି ନା ଡକାୟତି, ତଥାପି କାହିଁକି ସେ ଜେଲରେ ? କ'ଣ ସେ ସଭାକୁ ଚାଲିଯିବାଟା ଏଡ଼େ ବଡ଼ ଅପରାଧଟିଏ ଯେ ସେଥିପାଇଁ ଏତେ ଦିନ ହେଲାଣି ସେ ଜେଲ୍‌ରେ ?

ହଠାତ୍ ଦିନେ ଜେଲର ଆସି ପଚାରିଲେ - କିଶୁ ? କିଶୁ ଓରାମ କିଏ ?

ଗୋଟିଏ କ'ଣରେ ମନମାରି ବସିଥିବା କିଶୁ କିଛି ନକହି କେବଳ ଉଠି ଠିଆ ହେଲା । ତାକୁ ଠିଆ ହେବାର ଦେଖି ଜେଲର ବାବୁ ପଚାରିଲେ - ତୁ କିଶୁ ଓରାମ ?

ହଇ।

ଚାଲ, ଆସ ମୋ ସହ।

କିଶୁ ତାଂକ ପଛେ ପଛେ ଆସିଲା ଜେଲ ଦୁଆର ମୁହଁଯାଏ। ଜେଲର ତାକୁ କହିଲେ ଦେଖ୍ ତୋ ସ୍ତ୍ରୀ ଆସିଛି ତୋତେ ଭେଟିବା ପାଇଁ, ନୀୟମ ନାହିଁ ସାକ୍ଷାତ କରିବାର, ତଥାପି ଆମେ ତୋତେ ପାଞ୍ଚମିନିଟ୍ ପାଇଁ ଅନୁମତି ଦେଉଛୁ।

କଡ଼ା ସୁରକ୍ଷା ମଧ୍ୟରେ କିଶୁ ବାହାରିଲା ବାହାରକୁ। ଆଶ୍ଚର୍ଯ୍ୟ ହୋଇଗଲା ସାମ୍ନାରେ ଦୁପଦୀ ଓ ଗାଆଁର ଅନ୍ୟ ଲୋକମାନଙ୍କୁ ଦେଖି।

କିଶୁକୁ ଦେଖୁ ଦେଖୁ ବାୟାଣୀ ପରି ତା'ପାଖକୁ ଧାଇଁ ଆସି ଦୁପଦୀ କହିଲା – ଦେଖ୍, ଦେଖ୍ ମୁଁ କହିଥିଲି ନା ଝିଅ ହେବ ବୋଲି, ଝିଅ ବି ହେଲା, ତା'ନାଆଁ କ'ଣ ରଖିଛି ଜାଣୁ। ମୁଁ କ'ଣ ରଖିଛି ବା, ଆମ ଗାଆଁକୁ ଯେଉଁ ସଂସ୍ଥାମାନେ ଯାଆନ୍ତି ନା, ସେମାନେ ତା' ନାଆଁ ରଖିଥିଲେ ଯଶମିନ୍ ଓରାମ। ଭଲ ନାଆଁଟିଏ ଦେଇଥିଲେ ନା ? ଭଲ ନାଆଁ ଦେଲେ କ'ଣ ହେବ, ସେଇ ଭଲ ନାଆଁ ପାଇଁ ତ ଡାହାଣୀ ଖାଇଗଲା ତାକୁ, ଏତିକି କହି କପଡ଼ାରେ ଗୁଡାଇ ରଖିଥିବା ଝିଅର ମୁହଁକୁ ଖୋଲି ଦେଖାଇଲା କିଶୁକୁ।

କିଶୁ ଝିଅର ମୁହଁକୁ ଦେଖୁ ଦେଖୁ ଦୁପଦୀ କହିଲା – ମୁଁ ଜିଦ୍ କଲି ଜନମ ବେଳେ ଦେଖି ନଥିଲା, ମଲାବେଳକୁ ଦେଖି ପାରିଲାନି। ହେଲେ ଯଦି ମଲା ପିଲାଟାକୁ ନଦେଖାଏ ସିଏ କ'ଣ ବିଶ୍ୱାସ କରିବା ଯେ ସେ ବାପ ହୋଇଥିଲା ବୋଲି। ସେଇଥି ପାଇଁ ତ ଧାଇଁ ଆସିଛି, ଭଲ କରି ଦେଖିନେ, କାହିଁ କେତେ ନା କେତେ ବେଳୁ ମଲାଣି।

କିଶୁ ଆଖିରେ ଲୁହ ନଥିଲା। ସେ ପାଇଟି ଯାଉଥିଲା ଜଡ଼। କେବଳ ବଲବଲ କରି ଚାହିଁଥିଲା ଥରେ ଝିଅର ମୁହଁକୁ ତ ଥରେ ଦୁପଦୀର ମୁହଁକୁ।

ଦୁପଦୀ ତାକୁ ବୁଝାଇବା ପରି କହିଲା – ମନ ମାରନା, ଉଣା କରନା, ମାଆ ଡଂଗରାଣୀ ଦେଇଥିଲା, ପୁଣି ନେଇଗଲା। ତୁଇ ଜେଲରୁ ଫିଟି କରିଆ, ମାଆ ଚାହିଁଲେ ପୁଣି ପିଲା ଜନମ କରି ତୋ' ହାତକୁ ଦେବି।

ସମୟ ସରିଗଲା କହି ଜେଲର କିଶୁକୁ ଫେରାଇ ନେଲେ ଜେଲଭିତରକୁ। ଭିତରକୁ ପଶିବା ବେଳେ ସେ କେବଳ ଶୁଣିଥିଲା ଗୋଟିଏ ବୁକୁ ଫଟା କାନ୍ଦର ରଢ ସରକୁ।

କିଛି ମାସ ପରେ କିଶୁ ଜେଲରୁ ମୁକୁଳିଲା। ମୁକୁଳିବା ଯାଏଁ ବି ସେ ଜାଣି ପାରୁନଥିଲା ସେ କ'ଣ ପାଇଁ ଜେଲରେ ଥିଲା ଓ ଜେଲରୁ କେମିତି ମୁକୁଳିଲା ? ମୁଖିଆ ଠାରୁ ଯାହା ଶୁଣିଥିଲା କେଉଁ ଗୋଟେ ସ୍ୱେଚ୍ଛାସେବୀ ଅନୁଷ୍ଠାନ ତାଂକର ମୁକ୍ତି ପାଇଁ କେଶ୍ ଲଢୁଥିଲା ଏବଂ ଶେଷରେ ସଫଳ ହୋଇ ସେମାନଂକୁ ନିର୍ଦ୍ଦୋଷରେ ମୁକୁଳାଇଛି, ସେମାନେ ବି ତାଂକ ଗାଡିରେ ଆଣି ଛାଡ଼ି ଦେଇଗଲେ ତଂକ ଗାଆଁ ମୁଣ୍ଡ ରାସ୍ତାରେ, ଯେଉଁଠୁ ଗାଡି ଆଉ ଆଗକୁ ଯିବନି।

ପାଦଚଲା ରାସ୍ତାରେ ପାହାଡ଼ ଡେଇଁ, ଡଂଗର ଡ଼େଇଁ ଗଲେ ଯାଇ ପଡିବ ତାଂକ ଗାଆଁ। ଗାଡିରୁ ଓହ୍ଲାଇଲା ବେଳକୁ ସମସ୍ତଂକ ଭିତରେ ବ୍ୟଗ୍ରତା ଥିଲା ଯାଇଁ ଗାଆଁରେ ପହଂଚିବାକୁ। ମୁଖିଆ ସମସ୍ତଙ୍କୁ କହୁଥିଲା - ବେଳ ବୁଡ଼ିବା ବୁଡ଼ିବା ହେଲାଣି, ଅନ୍ଧାର ଘୋଟି ଆସିବ। ଚାଲ ସମସ୍ତେ ବେଗି ବେଗି ଚାଲିବା।

ସମସ୍ତେ ଚାଲିବା ଆରମ୍ଭ କଲା ବେଳକୁ କିଶୁ ଛିଡା ହୋଇଥିଲା ସ୍ଥାଣୁ ପରି ମୁଖିଆ ପଚାରିଲା - ଠିଆ ହୋଇ ରହିଲୁ କାହିଁକି - ଚାଲ, ଚାଲ।

କିଶୁ ମୁଖିଆକୁ କହିଲା - ତୁଇ ଗାଆଁକୁ ଯାଆ ମୁଖିଆ, ମୁଇଁ ଆଉ ନାଇଁ ଫେରେ ଗାଆଁକୁ।

ଗାଆଁକୁ ଫେରିବୁନି, କୁଆଡ଼େ ଯିବୁ ?

ମୁଁ ଯାଉଛି ସେମାନଂକ ପାଖକୁ।

ସେମାନଙ୍କ ପାଖକୁ! କିଏ ସେ ସେହି ସେମାନେ ?

ସେହି ଲାଲ ପାର୍ଟି, ଯିଏ ଆମର ସୁଖ ଦୁଃଖ ପାଇଁ ଲଢ଼ାଇ କରୁଛନ୍ତି ବୋଲି ତୁ କହୁଥିଲୁ।

ତୋ'ର ମୁଣ୍ଡ ଫୁଣ୍ଡ ଠିକ୍ ଅଛିତରେ କିଶୁ? ଥରେ ତ ତାଂକରି ସଭାକୁ ଯାଇ ଏଇ ଦଶା, ପୁଣି ସେଠିକୁ ମନ ବଳାଉଛୁ।

ହଁ - ମୁଁ ସେତେବେଳେ କିଛି ନବୁଝି ତୋ'ସହ ସଭାକୁ ଯାଇଥିଲି, ଏବେ ସବୁ ବୁଝିକରି ତାଂକ ପାଖକୁ ଯାଉଛି। ତୁଇ କେବଳ ଦ୍ରୁପଦୀକୁ କହିବୁ, ସେ ମୁଣ୍ଡର ବାଳକେ ମୁକୁଳା ରଖିଥିବ, ଯେଉଁମାନେ ଆମର ରକତ୍ ଶୋଷୁଛନ୍ତି ସେମାନଂକ ରକତ୍ ଧରି ମୁଁ ଫେରିବା ଯାଏଁ।

ଏତିକି କହି ସାରି କିଶୁ ଦୌଡୁଥିଲା ଜଂଗଲ ଭିତରକୁ। ଧୀରେ ଧୀରେ ସେ ଦୂରେଇ ଯାଉଥିଲା ଦୃଷ୍ଟିର ପରିଧିରୁ, ଘୋଟି ଆସୁଥିଲା ଅନ୍ଧାର। ମୁଖିଆ ଅନ୍ୟ ସମସ୍ତଙ୍କୁ କହିଲା - ଚାଲ, ରାତି ଯେତେବେଳେ ଆସିଲାଣି, ସକାଳ ତ ନିଶ୍ଚୟ ହେବ।

* * *

# ।। ଗୋଟେ ମିଛର ଏଲିଜି ।।

ଆମ ଭଡ଼ା ଘରର ଅବସ୍ଥିତି ଏମିତି ଥିଲା ଯେ ପର ଘର କଥାରେ କାନ ପୁରାଇବାର ଇଛା ନ ଥିଲେ ମଧ ସେଗୁଡିକ ଆମ କାନରେ ପଶିବାକୁ ବାଧ ହେଉଥିଲେ । ଆମ ଶୋଇବା ଘର ଓ ଡାଇନିଂ ଟେବୁଲ ପଡୁଥିବା ଜାଗାରେ ଗୋଟେ ପାର୍ଟିସନ୍ ୱାଲ ଦିଆଯାଇ ଘରଟିକୁ ଦୁଇଭାଗ କରାଯାଇଥିଲା । ଲାଗି ଲାଗି ଥିଲା ରୋଷେଇ ଘର ଓ ଆମ ବାଥ୍ ରୁମ୍‌ର ସ୍କାଏ ଲାଇଟ୍‌ରୁ ଦେଖି ହେଉଥିଲା ସେପଟ ଘରର ଅଗଣା । ରୋଷେଇ ଘରର ଝରକା ଦେଇ ଶୁଣି ହେଉଥିଲା ସେପଟ ରୋଷେଇର ଶବ୍ଦ ଓ ଶୁଂଘି ହେଉଥିଲା ବାସ୍ନା ବାଥ୍ ରୁମର ଶାୱାର ଶବ୍ଦ, ପୂଜା ଘରୁ ଘଣ୍ଟିର ଶବ୍ଦ ଓ ଧୂପର ବାସ୍ନାର ଅବାଧ ପ୍ରବେଶ ଥିଲା ଆମ ଘରଭିତରକୁ । କେବଳ ଯା' ଦୁଇଟି ଭଡ଼ା ଘର ମଧରେ ଦୂରତା ସୃଷ୍ଟି କରୁଥିଲା ଘରର ପ୍ରବେଶ ପଥ । ଆମ ଭଡ଼ା ଘରଟି ଦକ୍ଷିଣ ଦୁଆରୀ ଥିଲା ବେଳେ ସେମାନଂକର ଥିଲା ଉତ୍ତର ମୁହାଁ ।

ଏତେ ପାଖରେ ରହୁଥିବା ସତ୍ତ୍ୱେ ଆମର ସେ ପରିବାର ସହିତ କୌଣସି ସଂପର୍କ ନଥିଲା କହିଲେ ଚଳେ । କେବଳ ଯାହା ଜାଣିଥିଲି ସେପଟେ ଯିଏ ରହୁଛନ୍ତି ସେ ଆର.ଟି.ଓ ଅଫିସର କିରାଣୀ । ଘର ବ୍ରହ୍ମପୁରରେ । ଦୁଇବର୍ଷ ତଳେ ବାହା ହୋଇଥିଲେ ଏବଂ ଏବେ ପତ୍ନୀଙ୍କୁ ଧରି ରହୁଛନ୍ତି । ତାଂକ ବିଷୟରେ ମଧ ଆମେ ଏତକ ଜାଣି ପାରିନଥାନ୍ତୁ ଯଦି ଆମ ଆଗରେ ରହୁଥିବା ମିଶ୍ରବାବୁଙ୍କ ପତ୍ନୀ ଆମକୁ ଏ ବିଷୟରେ ଅବଗତ କରାଇ ନଥାନ୍ତେ ।

ମିଶ୍ର ବାବୁଙ୍କ ପତ୍ନୀଙ୍କର ଗୋଟେ ଭଲ ଅଭ୍ୟାସ, ଅବଶ୍ୟ କେହି କେହି ଏହାକୁ ଖରାପ ଅଭ୍ୟାସ ବୋଲି ମଧ କହିଥାଆନ୍ତି । ମିଶ୍ର ବାବୁ ସ୍କୁଲ ଚାଲିଯିବା ପରେ ସେ ବୁଲି ବାହାରନ୍ତି ପଡ଼ୋଶୀଙ୍କ ଘରକୁ । ଆଜି ଯା' ଘରେ ତ କାଲି ତା' ଘରେ ସେ ଆଖଡ଼ା ଜମାନ୍ତି ପାଖହାକର ବିଭିନ୍ନ ପଡ଼ୋଶୀଙ୍କ ଘରେ । ଯେହେତୁ ଆମ କଲୋନୀଟିରେ କେବଳ ଚାକିରୀଆମାନେ ରହୁଥିଲେ; ତେଣୁ ଦଶଟା ପରେ ପ୍ରାୟତଃ ପୁରୁଷଶୂନ୍ୟ ହୋଇ ପଡୁଥିଲା କଲୋନୀର ସମସ୍ତ ଘର । ତେଣୁ ଗପସପ କରିବାକୁ ପର୍ଯ୍ୟାପ୍ତ ସମୟ ମିଳୁଥିଲା ସ୍ତ୍ରୀ ଲୋକମାନଂକୁ । ମିଶ୍ର ବାବୁଙ୍କ ପତ୍ନୀଙ୍କର ଏକ ବିଶେଷ ସୁବିଧା ଥିଲା ଯେ ତାଂକର ସ୍ୱାମୀ ସହରଠାରୁ ଦୂରରେ ଥିବା ତାଂକ

ସ୍କୁଲକୁ ସକାଳ ନଅଟାରେ ବାହାରି ଯାଇ ଫେରନ୍ତି ଅପରାହ୍ଣ ପାଞ୍ଚଟାରେ ଏବଂ ପହଞ୍ଚିବା ପରେ ପରେ ସାମାନ୍ୟ ଜଳ ଯୋଗ କରି ଚାଲି ଯାଆନ୍ତି ଟିଉସନ ପଢ଼ାଇବାକୁ ଯେ ଫେରୁ ଫେରୁ ରାତି ଦଶ। ଯଦିଓ ତାଂକର ବିବାହ ଦଶବର୍ଷ ପୂରି ଯାଇଥିଲା ତଥାପି ସେମାନେ ଥିଲେ ନିଃସନ୍ତାନ। ପିଲାଛୁଆ ଓ ସ୍ୱାମୀଙ୍କ ଜଂଜାଳ ନଥିବାରୁ ମିଶ୍ରବାବୁଙ୍କ ପତ୍ନୀଙ୍କୁ ମିଳୁଥିବା ଅଖଣ୍ଡ ସମୟକୁ ସେ ଏପରି ପଡ଼ୋଶୀମାନଂକ ଘରେ ବସି ଗପସପ କରିବାରେ କଟାଉଥିଲେ। ତାଂକର ସାଧାରଣ ସ୍ତ୍ରୀ ଲୋକମାନଂକ ଠାରୁ ଗୋଟିଏ ଭଲ ଗୁଣ ଥିଲା ଯେ ଯଦିଓ ସେ ପ୍ରାୟ ସମସ୍ତଙ୍କ ଘରେ ବସି ଗପସପ କରୁଥିଲେ, ମାତ୍ର କାହାରି ଘରର ଛିଦ୍ର କଥା ଅନ୍ୟ କାହାରି ଘରେ ପ୍ରକାଶ କରୁନଥିଲେ। ଯଦି କୌଣସି ନୂଆ ପଡ଼ୋଶିନୀଙ୍କ ବିଷୟରେ ଜାଣିବା ପାଇଁ ତାଂକୁ କିଏ ପଚାରେ, ସେ କେବଳ ସଂକ୍ଷିପ୍ତ ଉତ୍ତରଟିଏ ଦିଅନ୍ତି - ଭଲ, ଖୁବ୍ ଭଲ। ତାଂକର ଭଲ ମନ୍ତବ୍ୟକୁ ଆହୁରି ଠୋସ୍ କରିବାକୁ ସେ ତାଂକର କେତୋଟି ଭଲଗୁଣ ଯଥା - ରୋଷେଇକଳା, ସିଲାଇ, ଘରସଜା, ବୁଝାଟୁଣା ଇତ୍ୟାଦିର ଉଦାହରଣ ପେଶ୍ କରିଥାଆନ୍ତି। ସେଥିପାଇଁ ସେ ସାରା କଲୋନୀରେ ସମସ୍ତଙ୍କର ପ୍ରିୟପାତ୍ର ଥିଲେ।

କେବେ କାହାରି ବିରୁଦ୍ଧରେ କିଛି କହୁନଥିବା ମିଶ୍ରବାବୁଙ୍କ ପତ୍ନୀ ଥରେ ଆମ ଘରେ ବସି ଗପୁ ଗପୁ ମୋ ପତ୍ନୀଙ୍କ ଆଗରେ କେମିତି କହିପକାଇଲେ ଯେ - ଏଇ ଯେଉଁ ପାତ୍ରବାବୁ ନୁହଁମ, ଯିଏ ଆର.ଟି.ଓ. ଅଫିସରେ କାମ କରୁଛନ୍ତି; ସେ ଆଦୌ ଭଲ ଲୋକ ନୁହଁନ୍ତି।

ମୋ ପତ୍ନୀ ତାଂକୁ ପଚାରିଲେ - କାହିଁକି, କ'ଣ କଲେ କି ସିଏ ? ନିଜ ପାଟିରୁ ବାହାରି ଆସିଥିବା କଥା ପାଇଁ ସେ ସତର୍କ ହୋଇଯାଇ କଥା ବାଆଁରେଇବା ପାଇଁ ଚେଷ୍ଟା କରି କହିଲେ - ଛାଡ଼ନ୍ତୁ ପରଘର କଥାରେ ମୁଣ୍ଡ ପୂରାଇ ଆମର ଲାଭ କ'ଣ। ଝିଅଟାର ଦୁଃଖ ଦେଖି ମନ ସମ୍ଭାଳ ପଡିଲା ନାହିଁ ବୋଲି ପାଟିରୁ ବାହାରିଗଲା।

କ'ଣ ହୋଇଛି କହୁନାହାନ୍ତି। ମୁଁ କ'ଣ କାହା ଆଗରେ କହି ଦେଉଛି ?

କ'ଣ ଆଉ କହିବି - ଟି.ଭି. ରେଡିଓ, ଖବର କାଗଜରେ ଏତେ କଥା ବାହାରୁଛି। ତଥାପି ସେଇ ଯୌତୁକ ଲୋଭ ଯାଉନି ମଣିଷ ମନରୁ। ବାହା ହେବା ବେଳେ ଯାହା ତ ମାଗିଥିଲ ମାଗିଥିଲ, ବାହାଘରର ଦୁଇବର୍ଷ ପରେ ବି ସେ ଲୋଭ। ଲୋଭ ସାଂଗକୁ ଇଏ କି ଅଜବଦଣ୍ଡ କହିଲ ଭଲା ଝିଅଟା ଉପରେ ?

କ'ଣ ମାରଧର କରୁଛନ୍ତି କି ?

ସେ କଥା କରୁଥିଲେ ତ ବିଚରି ମୁହଁ ମାଡି ସବୁ ସହି ଯାଇଥାଆନ୍ତା। ହେଲେ ଇଏ ତ ପିଠିକୁ ନମାରି ପେଟକୁ ମାରିବା କଥା।

କ'ଣ ବିଚାରୀକୁ ଖାଇବା ପିଇବାକୁ ଦେଉନାହାନ୍ତି ନା କ'ଣ ? ମାଇପଙ୍କ ପେଟଟା କ'ଣ ଖାଲି ଖାଇ କରି ପୂରାଇବା ପାଇଁ, ସେ କଥା ହେଲେ ବି ଗୋଟେ ସ୍ତ୍ରୀ ଲୋକ ସମ୍ଭାଳି ନେବ। ମୁଁ ଜାଣେ ସନ୍ତାନଟିଏ ଜନ୍ମ ନକରିପାରିବାର ଦୁଃଖ। ସେଥିପାଇଁ ତ କେତେ ଡାକ୍ତର, ବଇଦ ଦେଖାଇବା ସହ ନାନା ଓଷାବ୍ରତ ଆମେ କରୁଛୁ। ହେଲେ ଦଶ ବର୍ଷ ହେଲାଣି ଆମ କୋଳ ଖାଲି ପଡିଛି। ଠାକୁର ଏଯାଏଁ ଆମକୁ ସେ ସୌଭାଗ୍ୟ ଦେଉନାହାନ୍ତି। ଅଥଚ ଦି'ବର୍ଷରେ ତିନି ତିନିଥର ସେ ସୌଭାଗ୍ୟ ବିଚରୀ ଭାଗ୍ୟରେ ଜୁଟି ମଧ୍ୟ ସେ ମାଆ ହୋଇପାରୁନି।

କ'ଣ ଗର୍ଭ ନଷ୍ଟ ହୋଇଯାଉଛି ?

ନଷ୍ଟ କାହିଁକି ହବ ମ, ତାଂକ ସ୍ୱାମୀଙ୍କ ଜିଦ୍ ଅବଶିଷ୍ଟ ପଚିଶ ହଜାର  ଟଂକା ଯୌତୁକ ନଆଣିଲା ଯାଏଁ ସେ ମାଆ ହୋଇ ପାରିବ ନାହିଁ। ସେଥିପାଇଁ ସେ ଗୋଟିକ ପରେ ଗୋଟିଏ କରି ତିନିଥର ନଷ୍ଟ କରାଇ ସାରିଲେଣି ଗର୍ଭ। ବିଚରୀରେ ବାପ ଘରେ ଦମ୍ ନାହିଁ, ସେଥିପାଇଁ ସେ ନୀରବ ରହି ତାଂକର ଅତ୍ୟାଚାର ସହି ଚାଲିଛି।

ଆରେ ଲୋକଟା କଂସ ନା କ'ଣ ?

କଂସ ତ ନିଜ ଜୀବନର ସୁରକ୍ଷା ପାଇଁ ଦେବକୀର ସନ୍ତାନଙ୍କୁ ମାରୁଥିଲା ହେଲେ ଇଏତ ମାତ୍ର ପଚିଶ ହଜାର ଟଂକା ଯୌତୁକ ପାଇଁ ନିଜ ସନ୍ତାନଙ୍କୁ ମାରି ଚାଲିଛି। ଇଏ କଂସ କେମିତି ହେବେ, ଇଏ ତ ମହାକଂସ। ହଉ ବିଚାରୀର ଦୁଃଖ ଶୁଣି ସମ୍ଭାଳି ପାରିଲିନି ବୋଲି ଆପଣଂକ ଆଗରେ କରିଦେଲି, ଆପଣ ଯେମିତି ଆଉ କାହା ଆଗରେ ଏକଥା ପ୍ରଘଟ ନ କରନ୍ତି। କ'ଣ କରିବି- କୁନ୍ତୀଙ୍କ ପାଇଁ ତ ଏ ଅଭିଶାପ ନାରୀ ଜାତି ଉପରେ ପଡିଛି, ପେଟରେ ପଚିବ କେମିତି, ହେଲେ ମୋ ରାଣ ତମକୁ, ଏ କଥା ଆଉ କାହାକୁ କହିବନି। କାନରୁ କାନ ହୋଇ କଥା ମିଶ୍ର ବାବୁଂକ କାନ ଯାଏଁ ଯଦି ଚାଲିଗଲା, ତେବେ ମୁଁ ଆଉ ସମ୍ଭଳା ପଡିବିନି। ତାଂକର ନୀତି ହେଲା ସମସ୍ତଙ୍କ ସହ ମିଶ୍ ହେଲେ କାହାରି ବିରୁଦ୍ଧରେ କାହା ଆଗରେ କୁହନି। ମୁଁ ବି ତାଂକୁ ଏଥିପାଇଁ ବଚନ ଦେଇଛି,ତେଣୁ ପୁଣି ଥରେ ରାଣ ପକାଉଛି ଆପଣ ଏକଥା ଆଉ କାହାକୁ କହିବେନି।

ଆପଣ ସେମାନଂକ ବିରୁଦ୍ଧରେ କ'ଣ କହିଲେ ଯେ ଅଯଥାଟାରେ ବ୍ୟସ୍ତ ହେଉଛନ୍ତି ?

ଯାହା ହେଲେ ବି ଇଏ ପରଘର କଥା ହେଲାନା।

ହଉ - ଆପଣ ନିଶ୍ଚିନ୍ତ ରୁହନ୍ତୁ ଏକଥା ମୋ ପାଖରୁ ଆଉ କାହା ପାଖକୁ ଯିବନି।

ସେଇ ଭରସା ମୋର ତମ ଉପରେ ଥିଲା ବୋଲି ତ ମୁଁ ମୁହଁ ଖୋଲି ଦେଲି।

ମୋ ପତ୍ନୀ ମିଶ୍ରବାବୁଙ୍କ ସ୍ତ୍ରୀଙ୍କୁ ଦେଇଥିବା ପ୍ରତିଶ୍ରୁତି ରକ୍ଷା କରି ଏକଥା ବହୁଦିନ ଯାଏ କାହାରିକୁ କହିନଥିଲେ, ଏପରିକି ମୋ ଆଗରେ ମଧ୍ୟ, ମାତ୍ର ତାଂକର କେତେଟା କାର୍ଯ୍ୟ

ମୋର ରୁଚି ବିରୁଦ୍ଧ ହେବାରୁ ମୁଁ ତାଂକ ଉପରେ ବିରକ୍ତ ହେବାରୁ ଶେଷରେ ବହୁଦିନ ପରେ ସେ ମୋ ପାଖରେ ମୁହଁ ଖୋଲିଲେ। ମୁଁ ଅନେକ ସମୟରେ ଲକ୍ଷ୍ୟ କରେ ମୁଁ ଯେତେବେଳେ ଟି.ଭି. ଦେଖାରେ ବ୍ୟସ୍ତ ଥାଏ, ସେ ଆମ ଘରର ପାର୍ଟିସନ ୱାଲ ପାଖରେ ଚୁପ୍ କରି କାନ ଡେରି ଶୁଣୁଥିବେ ସେପଟ ଘରର କଥା। ମୋତେ ଦେଖି ଦେଲା କ୍ଷଣି ସେ ଚାଲିଯାଆନ୍ତି। ମୁଁ ସେଠିକୁ ଗଲେ ଶୁଣେ ଜଣଙ୍କର ସମ୍ଭ୍ରମ ସହ ଗର୍ଜନ ତ ଆଉ ଜଣଙ୍କର ନାକ ସୁଁ- ସୁଁ ଶବ୍ଦ। ମୁଁ ବେଶ ଅନୁମାନ କରିନିଏ ସେ କ'ଣ ଶୁଣୁଥିଲେ ବୋଲି। ମୁଁ ତାଂକୁ ତାଛଲ୍ୟ କରି କୁହେ ଆହୁରି କ'ଣ ସଉକ ଅଛି ପରଘର କଥା ଶୁଣି ଖୁସି ହେବା ପାଇଁ ?

ମୁଁ କାହିଁକି ମ ପରଘରର କଥା ଶୁଣିବାକୁ ଯାଉଛି, ମୁଁ ସେ ଥାକରୁ ଆଚାରଡବାଟା, ଆଣିବାକୁ ଯାଇଥିଲି, ସେପଟୁ ପାଟି ଶୁଭିଲା ବୋଲି ଟିକେ କାନ ପାରିଦେଲି। ପାଟିରୁ କ'ଣ ବାରି ହୋଇଥାଆନ୍ତା ସେଇଟା ତାଂକ ଘରର ପାଟି ଥିଲ କି ବାହାରର ପାଟି ବୋଲି। ପଡାପଡ଼ୋଶୀ କରି ଅଛନ୍ତି ଯେତେବେଳେ ସେପଟେ କ'ଣଟେ ଭଲମନ୍ଦ ହୋଇଗଲେ ଆମେ ତ ଜାଣିବା କଥା ନା।

ଓହୋ - ତମେ ତାହାଲେ ସେମାନଂକ ଭଲମନ୍ଦ ଜାଣିବାକୁ କାନ ଡେରିଥିଲ।

ନୁହେଁ ତ ଆଉ କ'ଣ ?

ତମ ସ୍ତ୍ରୀ ଲୋକମାନେ କଥାଟାକୁ ସହଜରେ ବୁଲାଇ ଦେଇ ପାରନ୍ତି ନୁହେଁ ମାତ୍ର ତମେମାନେ ନିଜ କଥାକୁ ବହୁ ସହଜରେ ଭୁଲି ଯାଅ।

କ'ଣ ନିଜ କଥା ଭୁଲିଗଲୁ ?

ଆମର କ'ଣ ପାଟିଗୋଳ ହୁଏନି କି ?

କିଏ ମନା କଲା ?

ହେଲେ ତମ ପାଟିଗୋଳକୁ ଯଦି କିଏ କାନେଇଲା ଜାଣିଲ, କେମିତି ଲାଗିବ କୁହ ତ ?

ଆରେ ! ଭଲ ଲୋକ ତ ତମେ, ମୁଁ କାହିଁକି ସେମାନଂକ କଥାକୁ କାନେଇବି।

ମୁଁ ଯେତେବେଳେ ଦେଖେ ମୋ ସ୍ତ୍ରୀ ହଠାତ୍ ରୋଷେଇ କରୁ କରୁ ଥମ୍ ହୋଇ ଠିଆ ହୋଇଯିବେ ଏବଂ ସମସ୍ତ ଶବ୍ଦ କରୁଥିବା ସମ୍ଭାବ୍ୟ ଜିନିଷ ଗୁଡିକ ଯଥା - ଗ୍ରାଇଣ୍ଡର ପ୍ରେସରକୁକୁର କିମ୍ବା କଡ଼େଇର ସେଁ-ସାଁ ଶବ୍ଦକୁ ବନ୍ଦ କରିଦେଇ ସେପଟକୁ କାନ ଡ଼େରିବେ। ଏପରିକି ବନ୍ଦ ହୋଇଯିବ ତାଂକର କଡ଼େଇରେ ଖଡ଼କୁ ଥିବା ଶବ୍ଦ କିମ୍ବା ଭାତ ବାଢ଼ିବା ବେଳେ ଚଟୁର ଶବ୍ଦ। ତାଂକର ଶବ୍ଦ ବନ୍ଦ ହେବାକ୍ଷଣି ମୁଁ ଜାଣେ ସେ ସେପଟର ଶବ୍ଦକୁ କାନେଇଲେ।

ଥରେ ଥରେ ମୁଁ ତାଂକୁ ବୁଝାଇବାକୁ ଯାଇ କହେ - ସମସ୍ତ ସ୍ୱାମୀ ସ୍ତ୍ରୀଙ୍କ ଭିତରେ ନୋକ୍ ଝୋକ୍ ହୁଏ। କିଏ ଯଦି କହିଲା ମୋ ସ୍ତ୍ରୀ ସହ ମୋର ନୋକ୍ ଝୋକ୍ କେବେ ବି ହୋଇନି, ତେବେ ଜାଣିବ ସେମାନଙ୍କର ସଂପର୍କରେ କିଛି ଖୋଟ୍ ଅଛି ବୋଲି। ଏମାନେ ନୂଆନୂଆ ବାହାହୋଇଛନ୍ତି। ପିଲା ପିଲି ବି ହୋଇନି, ମାଇଣ୍ଡ ଆଡଜଷ୍ଟମେଂଟ ହୋଇ ସେଟିଂ ହୋଇନଥିବ, ତେଣୁ ସେମାନଂକର ଝଗଡ଼ାକୁ ତମେ ଏତେ ଗୁରୁତ୍ୱ ଦେଇ ଶୁଣିବାଟା ଆଦୌ ଭଦ୍ରାମୀ ନୁହଁ।

ମୋ ସ୍ତ୍ରୀ ଯେତେବେଳେ ଜାଣିଲେ ଯେ ସେ ମୋ ଆଖିରେ ସଂପୂର୍ଣ୍ଣ ଧରାପଡି ସାରିଲେଣି, ସେତେବେଳେ ସେ କହିଲେ - ମୁଁ ଅସଲ କଥାଟାକୁ ତମକୁ କହିଦିଅନ୍ତି ଯେ ହେଲେ ସେ ମିଶ୍ରବାବୁଙ୍କ ସ୍ତ୍ରୀଙ୍କ ରାଣକୁ ମୁଁ ଭାଂଗିପାରୁନାହିଁ।

ମୁଁ ଜାଣିଲି କଥାରେ କିଛି ରହସ୍ୟ ଅଛି। ତେଣୁ ପଚାରିଲି ଅସଲ କଥା କ'ଣ? ରାଣ ପା' ଖାଇଛି ପର ଆଗରେ କହିବିନି।

ପର ଆଗରେ ସିନା, ନ କହିବା ପାଇଁ ରାଣ ଖାଇଛ, ହେଲେ ମୁଁ କ'ଣ ତମର ପର?

ମୋର ଏ ପ୍ରଶ୍ନଟି ତାଂକର ସମସ୍ତ ଦ୍ୱନ୍ଦକୁ ସମାଧାନ କରିଦେଲା, ସେ ମିଶ୍ରବାବୁଙ୍କ ସ୍ତ୍ରୀଙ୍କ ଠାରୁ ଯେତିକି ଶୁଣିଥିଲେ ତାହା ସହ ସିଏ ସଂଗ୍ରହ କରିଥିବା କାନୁଶୁଣା କଥାକୁ ମୋ ପାଖରେ ବଖାଣି ବସିଲେ। ତାଂକ ଠାରୁ ସବୁ ଶୁଣି ସାରିବା ପରେ ମୋର କେବଳ ଉତ୍ତୁରି ଆସିଥିଲା ଏକ ଦୀର୍ଘଶ୍ୱାସ। ଅନେକ ସମୟ ଗୁମ୍ ରହିବା ପରେ ମୁଁ କହିଲି - ଅର୍ଥ ପାଇଁ ମଣିଷ ଏତେ ତଳକୁ ଚାଲି ଯାଇ ପାରେ?

ଏହା ପରେ ପଡ଼ୋଶୀ ହୋଇ ରହୁଥିବା ଭଦ୍ରବ୍ୟକ୍ତିଙ୍କ ପ୍ରତି ମୋ ଭିତରେ ସୃଷ୍ଟି ହେଲା ଘୃଣା ଭାବ। ମାତ୍ର ମୁଁ ଜାଣୁଥିଲି ଏପରି ଘୃଣା ସୃଷ୍ଟି କରି ନା ମୁଁ ତାଂକର କିଛି କ୍ଷତି କରି ପାରିନି ନା ଯେଉଁ ନିରୀହା ମହିଳାଙ୍କ ପାଇଁ ତାଂକ ସ୍ୱାମୀଙ୍କ ଉପରେ ମୋର ଘୃଣା ଭାବ ସୃଷ୍ଟି ହେଉଛି ତାଂକର କିଛି ମୁଁ ଉପକାର କରି ପାରିବି। ବରଂ ତାଂକ ସହ ଯଦି ମୁଁ ସଂପର୍କ ସୃଷ୍ଟି କରି ତାଂକର ଏହି ସମସ୍ୟାକୁ ସମାଧାନ କରିପାରେ ତେବେ ଯାଇ କିଛି ଲାଭ ହେବ।

ଗୋଟେ ଉଦ୍ଦେଶ୍ୟ ମୂଳକ ସଂପର୍କ ସ୍ଥାପନର ଚକ୍କରରେ ମୁଁ ଥାଏ। ଚିନ୍ତା କରୁଥାଏ କେମିତି ତାଂକ ସହ ଆରମ୍ଭ କରିବି ସଂପର୍କ। ଆମର ଏଠାରେ ଆସି ରହିବାର ଏତେ ଦିନ ପରେ ମଧ୍ୟ କେବଳ ମୁହଁ ଚିହ୍ନା ହୋଇଛି। କେବେ ବି ପଦେ କଥାବାର୍ତ୍ତା ନାହିଁ। ହଠାତ୍ ଏବେ ଯାଇ ବଳେ ପଶି ତାଂକ ସହ ସଂପର୍କ ସୃଷ୍ଟି କରିବାକୁ ଚାହିଁଲେ ସେ ହୁଏତ ଅନ୍ୟଥା ଗ୍ରହଣ କରିପାରନ୍ତି। ଇଚ୍ଛା ଥିଲେ ଉପାୟ ବଳେ ବଳେ ମିଳିଯିବା ପରି ମୋ ପୁଅର ଡ୍ରାଇଭିଂ ଲାଇସେନ୍‌ଟିଏ ଦରକାର ହେଲା। ପଡ଼ୋଶୀ ଜଣଙ୍କ ଆର.ଟି.ଓ. ଅଫିସ୍‌ରେ କାମ କରୁଥିବାରୁ

ଏଇ ବାହାନାରେ ତାଂକ ଠାରୁ ସାହାଯ୍ୟ ମାଗିବାକୁ ଦିନେ ସକାଳୁ ତାଂକ ଘରେ ଯାଇ ପହଂଚିଲି। ମୋତେ ହଠାତ୍ ତାଂକ ଘରେ ଦେଖି ସେ ଅପ୍ରତିଭ ହୋଇ ପଡି ନମସ୍କାରଟିଏ କଲେ। ମୁଁ ପ୍ରତି ନମସ୍କାର ଜଣାଇ କହିଲି, ଗୋଟେ ଛୋଟିଆ କାମରେ ଆସିଥିଲି, ଆପଣ ଯଦି ସାହାଯ୍ୟ କରିପାରିବେ ତେବେ ଖୁସି ହେବି।

ମୋ ପାଖରେ ଆପଣଂକର କି କାମ ପଡିଲା ?

ପୁଅର ଗୋଟେ ଡ୍ରାଇଭିଂ ଲାଇସେନ୍‌ସ ଦରକାର, ଏବେ କ'ଣ ସବୁ ନୀୟମ କାନୁନ୍ ବଦଳି ଯାଇଛି ମୁଁ ଜାଣେନି। ମୋ ସ୍ତ୍ରୀ କହିଲେ, ଆପଣଂକ ଠାରୁ ବୁଝିବା ପାଇଁ।

ସେ ମୋତେ ବସିବାକୁ କହି ତାଂକ ସ୍ତ୍ରୀଙ୍କୁ ଯାଇ କହିଲେ ଦୁଇ କପ୍ ଚ୍ୟ' କରିବା ପାଇଁ।

ଚ୍ୟ' ପିଇବା ଅବସରରେ ମୋତେ ବରାଦ କଲେ ପୁଅର ପାସ୍‌ପୋର୍ଟ ସାଇଜର ଫଟୋ ଓ ବ୍ଲଡ ଗ୍ରୁପ ସାର୍ଟିଫିକେଟ ସହ ଆବଶ୍ୟକୀୟ ଫିସ୍ ଦେଇଦେଲେ ଏବେ ପ୍ରଥମେ ଲର୍ନର ଲାଇସେନ୍‌ସ ମିଳିଯିବ। ମାସେ ଦୁଇମାସ ପରେ ଗୋଟିଏ ଫର୍ମାଲ ଟେଷ୍ଟ ପରେ ରେଗୁଲାର ଲାଇସେନ୍‌ସ ଦିଆଯିବ। ଶେଷରେ କହିଲେ ଆପଣଂକର ଯଦି ବେଳ ନାହିଁ, ଏସବୁ ଡକୁମେଣ୍ଟସ୍ ମୋତେ ଦେଇଦେଲେ ମୁଁ କରି ଆଣି ଦେଇ ଦେବି।

ତାଂକ କହିବା ମୁତାବକ ସବୁ କାଗଜପତ୍ର ମୁଁ ଦେଇ ଦେଲି। ଦୁଇଦିନ ପରେ ସେ ଲାଇସେନଟିଏ ଆଣି ଦିନେ ରାତିରେ ଆମ ଘରେ ପହଂଚିଲେ।

ସେ ଯେ କେବଳ ମୋ କାମଟି କରାଇ ଆସିଥିଲେ ବୋଲି ସେହି ଆଗ୍ରହାତିଶଯ୍ୟରେ ନୁହେଁ, ଯେହେତୁ ମୁଁ ଚାହୁଁଥିଲି ତାଂକ ସହ ସଂପର୍କ ଗଭୀର ହେଉ, ତାଂକୁ ଅନୁରୋଧ କଲି ବସିବା ପାଇଁ। ସ୍ତ୍ରୀଙ୍କୁ ବରାଦ କଲି, ଆଜି ତ ବର୍ଷା ପାଗ, ପାତ୍ର ବାବୁ ଆସିଛନ୍ତି, କିଛି ଗରମା ଗରମ ପକୋଡ଼ି ଛଣା ଯାଉ। ମାତ୍ର ମୋର ଆଦେଶ ଭାବନ୍ତୁ ବା ଅନୁରୋଧ କୁହନ୍ତୁ, ମୁଁ କହିବା ପୂର୍ବରୁ ମୋ ସ୍ତ୍ରୀ ଅତିଥି ଚର୍ଚ୍ଚାର ବ୍ୟବସ୍ଥା କରି ସାରିଥିଲେ।

ଆମେ ପକୋଡ଼ି ଖାଇବା ଅବସରରେ ମୋ ସ୍ତ୍ରୀ ତାଂକୁ ପଚାରିଲେ ବାହାଘର କେତେ ବର୍ଷ ହେଲାଣି ?

ଦୁଇ ବର୍ଷ ହେଲାଣି।

ଦୁଇବର୍ଷ ହେଲାଣି - ଆଉ ବାପା ଡାକ କେବେ ଶୁଣୁଛନ୍ତି ଓ କଲୋନୀରେ ଭୋଜି କେବେ ହେବ ?

ହଠାତ୍ ସେ ହୋଇଗଲେ ବିଷାଦ ଗ୍ରସ୍ତ। ଯେଉଁ କଥାଟା ଜାଣିବା ପାଇଁ ମୁଁ କେତେ କାଇଦାରେ ସଂପର୍କ ତିଆରି କରୁଥିଲି; ମୋ ସ୍ତ୍ରୀ ହଠାତ୍ ଠୋସ୍ କରି ପଚାରି ଦେବାରୁ, ସେ

କିଛି ଖରାପ ଭାବିଲେ ବୋଲି ମୁଁ ଆଶଙ୍କିତ ହୋଇ ପଡିଲି। ତେଣୁ କଥା ଚଳାଇବାକୁ ଯାଇ କହିଲି - ପିଲାଛୁଆ ତ କରିବେ, ଏତେ ତରତର କାହିଁକି। ଯୁଗ କେତେ ଆଗେଇ ଗଲାଣି, ସମସ୍ତେ କ'ଣ ତମରି ପରି ହୋଇଛନ୍ତି ଯେ ବାହାଘର ବର୍ଷେ ନପୁରୁଣ ମାଆ ହୋଇ ଯାଇ ବିବାହର ସବୁ ଗର୍ମକୁ ସାରିଦେବ।

ନା - ସାର୍ ସେ କଥା ବି ନୁହେଁ।

ନାଇଁ - ନାଇଁ, ପାତ୍ର ବାବୁ ଆପଣ କିଛି ମାଇଣ୍ଡ କରନ୍ତୁ ନାହିଁ। ସବୁ ସ୍ତ୍ରୀ ଲୋକଂକର ଗୋଟିଏ ଦସ୍ତୁର ବାହାଘର ପରେ ପରେ ପିଲାଛୁଆ ଜନ୍ମ କରିବାର କାମନା କରିବା। ଆରେ ବୈବାହିକ ଜୀବନକୁ ଉପଭୋଗ କର କିଛି ବର୍ଷ, ପିଲା ଛୁଆଂକର ବାପ ହେବାକୁ କ'ଣ ବେଳ ପଳାଉଛି।

ନାଇଁ ସାର୍, ଆମ କ୍ଷେତ୍ରରେ ମଧ୍ୟ ସେ କଥା ନୁହଁ। ସବୁ ସ୍ତ୍ରୀ ଲୋକଂକ ପରି ମୋ ସ୍ତ୍ରୀ ମଧ୍ୟ ମାଆ ହେବାକୁ ବ୍ୟସ୍ତ ହେଲେ ମୁଁ ଜାଣୁ ଜାଣୁ...

କ'ଣ ହୋଇଛି କି ତାଂକର ?

ମୁଁ ଖୁବ୍ ଭଲପାଏ ତାକୁ କିଂତୁ ସେ ମାଆ ହେବାକୁ ଭଲପାଏ। ଏହା ତ ସବୁ ସ୍ତ୍ରୀମାନଂକର ରୋଗ।

ହଁ ଯେ, ହେଲେ ତାଂକ ଜୀବନ ବିନିମୟରେ ମୁଁ ବାପ ହେବାକୁ ଚାହେଁନା।

ମୁଁ କିଛି ବୁଝି ପାରିଲି ନାହିଁ ଆପଣଂକ କଥା।

ଆମ ବିବାହର ଦୁଇବର୍ଷ ମଧ୍ୟରେ ସେ ତିନିଥର ମାଆ ହେବାକୁ ବସିଲେଣି, ମାତ୍ର ତାଂକର ଜୀବନ ଭୟରେ ମୁଁ ସେ ସୁଯୋଗ ତାଂକୁ ଦେଉନି। ଗୋଟେ କଂସେଇ ପରି ତିନିତିନିଥର ତାଂକର ସପ୍ନର ଭୃଣକୁ ମୁଁ ହତ୍ୟା କରିସାରିଲିଣି।

କାହିଁକି ?

ପ୍ରଥମ ଥର ଯେବେ ସେ ମାଆ ହେବାକୁ ବସିଲେ, ସେତେବେଳେ ସମସ୍ତ ପରୀକ୍ଷା ନିରୀକ୍ଷା କରି ଡାକ୍ତର କହିଲେ - ଆପଣ ପତ୍ନୀଙ୍କର ଜୀବନ ଚାହାନ୍ତି ନା ପିତୃତ୍ୱ ? ହଁ - ଆପଣ ଯଦି ପିତୃତ୍ୱ ଚାହାନ୍ତି ମଧ୍ୟ, ତା'ର କିଛି ଗ୍ୟାରେଣ୍ଟି ନାହିଁ ସେ ସନ୍ତାନଙ୍କୁ ଜନ୍ମ କରି ପାରିବେ।

କ'ଣ ହୋଇଛି କି ତାଂକର ?

ତାଂକର ଜରାୟୁରେ ଡିଫେକ୍ଟ ଅଛି। ଏହା କ୍ୱଚିତ ସ୍ତ୍ରୀ ଲୋକଂକ ପାଖରେ ଦେଖାଯାଏ। ଭୃଣ ତାଂକ ଜରାୟୁକୁ ନ ଯାଇ ତାଂକର ଫ୍ୟାଲୋପିଆନ ଟ୍ୟୁବ ଭିତରେ ବଢୁଛି। ଏହାକୁ ଯଦି ନଷ୍ଟ ନ କରାଯାଏ ତେବେ ଏହା ତାଂକ ଜୀବନ ପ୍ରତି ବିପଦ ସୃଷ୍ଟି କରିବ।

ଆପଣ କେଉଁଟା ଚାହାନ୍ତି ?

ଜଣେ ଅନାଗତ ଶିଶୁ ଅପେକ୍ଷା ପତ୍ନୀ ମୋର ଅଧିକପ୍ରିୟ । ତେଣୁ ମୁଁ ତାଂକର ଜୀବନ ଚାହେଁ ।

ପ୍ରଥମଥର ଗର୍ଭପାତ ସମୟରେ ଡାକ୍ତର କହିଥିଲେ - ଏହା ବାରମ୍ବାର କରିବା ନିରାପଦ ନୁହେଁ, ତେଣୁ ପୁନଃ ଗର୍ଭସଂଚାର ନ ହେବା ପାଇଁ ସତର୍କ ରହିବା ଆବଶ୍ୟକ ।

ଡାକ୍ତର ମୋତେ ଯାହା କହିଲେ ମୁଁ କିଂତୁ କହିପାରିଲି ନାହିଁ ମୋ ପତ୍ନୀଙ୍କୁ । ବିଭିନ୍ନ ପରୀକ୍ଷା ନାଆଁରେ ହିଁ କରାଯାଇଥିଲା ପ୍ରଥମ ଗର୍ଭପାତ । ମାତ୍ର ଦ୍ୱିତୀୟ ଗର୍ଭପାତ କରାଇବା ବେଳେ ସେ ଏମିତି ଜିଦ୍ ଧରିଲେ ଯେ ମୋତେ ବାଧ ହୋଇ ଗୋଟିଏ ନିଛ ସ୍ତରର ମଣିଷର ଆଚରଣ କରିବାକୁ ପଡିଲା ।

କ'ଣ ?

ହଁ - ମୁଁ ତାଂକୁ କହିଲି, ମୁଁ ଚାହେନା କନ୍ୟା ଶିଶୁ, ଯଦି ତମେ ଚାହୁଁଛ ତେବେ ତମ ବାପ ଘର ମୋତେ ପଚାଶ ହଜାର ଟଙ୍କା ଯାହା ସିଏ ଦେବେ ବୋଲି କହିଥିଲେ ଦେଇନାହାନ୍ତି, ଆଣିସାର ତା'ପରେ ଝିଅ ଜନ୍ମ କରିବ । ତାଂକ ବାପ ଘରର ଆର୍ଥିକ ସ୍ଥିତି ଯାହା ଏତେ ଗୁଡାଏ ଟଂକା ଆଣିବା ନା ତାଂକ ପକ୍ଷରେ ସମ୍ଭବପର ଥିଲା ନା ସେ ଆଉ ଝିଅ ଜନ୍ମ କରିବାକୁ ସାହସ କରି ପାରିଲେ । ମାତ୍ର ମୋର ଏ ଆଚରଣ ଧୀରେ ଧୀରେ ତାଂକ ପାଖରେ ମୋର ଛବିକୁ ବିକୃତ କରି ଚାଲିଛି । ଏବେ ସେ ଗର୍ଭଧାରଣ କଲାପରେ ଦେବକୀର କଂସକୁ ଭୟ ପରି ମୋତେ ଭୟ କରୁଛନ୍ତି । ମୋ ପରିବାର ଭିତରେ ଏବେ ଲାଗିଗଲାଣି ନିଆଁ । ମୁଁ ଜାଣେ ମୁଁ ଯଦି ତାଂକୁ ଅପ୍ରିୟ ସତ୍ୟଟି କହେ ତେବେ ସେ ହୁଏତ ତାକୁ ଅବିଶ୍ୱାସ କରିପାରନ୍ତି କିମ୍ବା ଯଦି ବିଶ୍ୱାସ କଲେ ତେବେ ଭିତରେ ଭିତରେ ଏମିତି ଭାଂଗି ପଡ଼ିବେ ଯେ ମୁଁ ହୁଏତ ତାଂକ ଭିତରେ ତାଂକୁ ଆଉ ପାଇ ପାରିବି ନାହିଁ । ଏମିତି ଏକ ଧର୍ମ ସଂକଟରେ ମୋ ପାରିବାରିକ ଜୀବନ ଉଚ୍ଛନ୍ନ ହେବାକୁ ବସିଲାଣି । ମୁଁ ଭାବୁଛି ଏକ ମସ୍ତବଡ଼ ଭୁଲ ହୋଇଗଲା ଜୀବନରେ ଯଦି ପ୍ରଥମ ଗର୍ଭପାତ ସମୟରେ ମୁଁ ତାଂକୁ ସେହି ସାଂଘାତିକ ସତ୍ୟର ସାମ୍ନା କରାଇ ଦେଇଥାଆନ୍ତି, ତେବେ ଆଜିର ଏ ଅବସ୍ଥା ଆସି ନଥାନ୍ତା ମୋ ପାରିବାରିକ ଜୀବନରେ । ସେତେବେଳେ ସେ ହୁଏତ ଭାଂଗିପଡିଥାଆନ୍ତେ କିଛି ଦିନ ପାଇଁ, ଧୀରେ ଧୀରେ ତାକୁ ଗ୍ରହଣ କରି ନେଇଥାଆନ୍ତେ ଏବଂ ଅନ୍ୟ ବହୁ ନିଃସନ୍ତାନ ଦମ୍ପତ୍ତିଙ୍କ ପରି ଆମେ କଟାଇ ଦେଇଥାଆନ୍ତୁ ଆମ ଜୀବନ । ମାତ୍ର ମୋର ସାମାନ୍ୟ ଏକ ଭୁଲ, ଯାହାକୁ ଆପଣ ଏକ ଅଭିନୟ ବି ଭାବିପାରନ୍ତି ତାହା ଯେ ତାଂକର ତଥା ମୋ ପାରିବାରିକ ଜୀବନକୁ ଏମିତି ଦୁର୍ବିସହ କରିଦେବ ମୁଁ ଚିନ୍ତା କରିନଥିଲି । ଏବେ ତାଂକ ଆଗରେ ତାଂକ ପରିବାର ଆର୍ଥିକ ଅସ୍ୱଚ୍ଛଳତାକୁ ନେଇ ତାଂକ

ସ୍ୱପ୍ନକୁ ହତ୍ୟା କରୁଥିବା ଗୋଟେ କଂସେଇର ପରିଚୟ ମୋର। ସେ ପରିଚୟରୁ ମୁକୁଳିବା ପାଇଁ ମୁଁ ଗୋଟେ ରିସ୍କ ନେଇ ନା ତାଂକୁ ମାଆ ହେବାର ସୁଯୋଗ ଦେଇପାରୁଛି ନା ସେ ଗୋପନୀୟ ସତ୍ୟଟି ତାଂକ ଆଗରେ ପ୍ରକାଶ କରିପାରୁଛି। ଏବେ ସତ୍ୟ ପ୍ରକାଶ କରିବାରେ ମୋର କୁଣ୍ଠା ନାହିଁ ମାତ୍ର ସେ ମୋର ସତ୍ୟ ପ୍ରକାଶକୁ ଏବେ ଅଭିନୟ ବୋଲି ହିଁ ଭାବିବେ। ମୁଁ ଏବେ ଏକ ଚରମ ଧର୍ମ ଶଂକଟରେ, କ'ଣ କରିବି କିଛି ଭାବି ପାରୁନାହିଁ।

ଏତକ କହି ସାରିଲା ବେଳକୁ ପାତ୍ରବାବୁ ଥମ୍ ଥମ୍ ହୋଇ ଯାଇଥିଲେ ସତ ହେଲେ ଲାଗୁଥିଲେ ଖୁବ୍ ହାଲକା। ସେ ଉଠିଲେ ଯିବା ପାଇଁ। ମୁଁ ତାଂକ ପିଠିକୁ ଆଶ୍ୱସନାରେ ଥାପୁଡ଼େଇ ଦେଇ କହିଲି - ଭରସା ରଖ, ସବୁ ଠିକ୍ ହୋଇଯିବ।

ସେ ଚାଲିଯିବା ପର୍ଯ୍ୟନ୍ତ ମୋ ପତ୍ନୀ ଥିଲେ ନିରବ ଏବଂ ଗୁମ୍‌ସୁମ୍। ସେ ଚାଲି ଯାଉଁ ଯାଉଁ କହିଲେ - ଦେଖ ତ ମିଶ୍ର ବାବୁଙ୍କ ସ୍ତ୍ରୀଙ୍କ କଥାରେ ମୁଁ ତାଂକୁ କ'ଣ ନାହିଁ କ'ଣ ଭାବୁଥିଲି ଅଥଚ ସେ କେତେ ମହାନ।

ମିଶ୍ରବାବୁଙ୍କ ପତ୍ନୀଙ୍କୁ କାହିଁକି ଦୋଷ ଦେଉଛ ସେ ଯାହା ପାତ୍ର ବାବୁଙ୍କ ପତ୍ନୀଙ୍କ ଠାରୁ ଶୁଣିଥିଲେ ତାହା ହିଁ ତ କହିଥିଲେ। ଅସଲ ଗୁମରଟି ଯେତେବେଳେ ପାତ୍ରବାବୁଙ୍କ ପତ୍ନୀଙ୍କୁ ମାଲୁମ ନାହିଁ ମିଶ୍ରବାବୁଙ୍କ ପତ୍ନୀ ଅବା ଜାଣିବେ କେମିତି ?

ହଁ - ସେଇଟା ବି ଠିକ୍ କଥା। ହେଲେ ତାଙ୍କର ଏ ଭୁଲ୍ ବୁଝାମଣା କେମିତି ଦୂର ହେବ ?

ଦୂର ହେବ - କେତେ ବଡ଼ ବଡ଼ ଭୁଲ ବୁଝାମଣା ଦୂର ହୋଇଛି, ଆଉ ଏଇଟା ହୋଇପାରିବ ନାହିଁ, କେବଳ ଆନ୍ତରୀକ ଚେଷ୍ଟାର ଆବଶ୍ୟକ।

ସେ ଚେଷ୍ଟା କରିବ କିଏ ?

କିଏ କ'ଣ ? ତମେ କରିବ ନାହିଁକି ?

ମୋ ପତ୍ନୀ ବୁଝିଗଲେ ମୋ କଥାର ଉଦ୍ଦେଶ୍ୟ, ତା'ପରେ ବିଭିନ୍ନ ଉଦ୍ଦେଶ୍ୟରେ ସେ ତାଂକ ଘରକୁ ଗଲେ ବାରମ୍ବାର। ମାତ୍ର ତାଂକର ଲକ୍ଷ୍ୟ ସିଦ୍ଧିର ଅଗ୍ରଗତି କେତେଦୂର ହେଉଥାଏ ସେ କଥା ମୋତେ ଜଣାଉ ନଥିଲେ।

ଦିନେ ବଡ଼ି ସକାଳୁ ମୋ ନିଦ ଭାଙ୍ଗିନଥାଏ, ସେ ମୋତେ ବ୍ୟସ୍ତ କରି ଉଠାଇଲେ, ଉଠ, ଉଠ ଦେଖ।

ମୁଁ ବିରକ୍ତ ହୋଇ କହିଲି, କ'ଣଟା ଦେଖିବା ପାଇଁ ତମେ ସକାଳୁ ସକାଳୁ ଏମିତି ପାଲା ଲଗାଇଛ କହିଲ।

ସେ ମୋତେ ଟାଣିନେଲେ ବାହାରକୁ, ଯେଉଁଠି ଥାଇ ଦେଖିହେବ ପାତ୍ରବାବୁଙ୍କ ଘରର ହାଲଚାଲ, ସେଠି ଠିଆ କରାଇ ମୋତେ ପଚାରିଲେ - ଦେଖୁଛ ?

ହଁ - ଭୋଗରାଗ ଧରି ବାହାରିଛନ୍ତିମାନେ ସେମାନେ ମନ୍ଦିର ଯାଉଥିବେ।

ଏତେ ଦିନ ରହିବା ଭିତରେ ତମେ କେବେ ଦେଖିଥିଲ ଏମିତି ଦୃଶ୍ୟ ? ଏହା କ'ଣ ତମ ସାଧନାର ଫଳ ନା କ'ଣ ?

ଏବେ କିଛି କହି ହେବନି - ଯାଉ ଆଉ ଟିକେ ଆଗକୁ।

ସେଦିନ ସକାଳର ଚା'ସହିତ ଖବର କାଗଜ ଉପରେ ମୁଁ ଆଖି ବୁଲାଉଛି। ହଠାତ୍ ପାତ୍ରବାବୁ ଓ ତାଂକ ପତ୍ନୀ ଆମ ଘରକୁ ପ୍ରବେଶ କଲେ। ମୁଁ ତାଂକୁ ଆଶ୍ଚର୍ଯ୍ୟ ଚକିତହୋଇ ଚାହିଁବା କ୍ଷଣି ସେ କହିଲେ - ଆମେ ମନ୍ଦିର ଯାଇଥିଲୁ ତ ଭାବିଲୁ ଆପଣଂକୁ ଭେଟି ଟିକେ ପ୍ରସାଦ ଦେଇଯିବା ପାଇଁ।

ମୁଁ ତାଂକ ପତ୍ନୀଙ୍କୁ ଚାହିଁ ପ୍ରଶ୍ନ କରି - ଆଉ ମାଆ, ସବୁ ଭଲ ତ ?

ହଁ - ସତ୍ୟ ଯେତେ ନିର୍ମମ ହେଲେ ମଧ ତାକୁ ଗ୍ରହଣ କରି ନେଇ ଯେତିକି ପ୍ରାପ୍ତି ଅଛି ସେତିକିରେ ବଂଚିଲେ ମଣିଷ ସୁଖି ହୋଇପାରେ। ଗୋଟେ ଅସ୍ତିତ୍ୱହୀନ ଅପ୍ରାପ୍ତିର ଅବଶୋଷ ନେଇ ବଂଚିବା ଅପେକ୍ଷା ଏ ଦାମ୍ପତ୍ୟ କ'ଣ ଭଲ ନୁହେଁ।

ମୋ ସ୍ତ୍ରୀ ପରମ ତୃପ୍ତିରେ କେବଳ ଚାହିଁଥିଲେ ଉଭୟଂକୁ।

* * *

## ॥ ସୁଖ ମୁହାଁ ॥

ସମସ୍ତେ ଡାଏନିଂ ଟେବୁଲ ପାଖରେ ଅପେକ୍ଷା କରିଥିଲେ ସାଏନାକୁ। ସୁପ୍ ନେଉ ନେଉ ବାପା ପଚାରିଲେ ସାଏନା କ'ଣ ଟି.ଭି. ଦେଖାରେ ମସ୍‌ଗୁଲ ନା କ'ଣ - ଖାଇବାକୁ ଆସିଲାନି ଏ ଯାଏଁ ଯେ ?

ମାଆ କହିଲେ ନାଇଁମ ସେ ଟି.ଭି. କାହିଁକି ଦେଖିବ - ନେଟ୍‌ରେ ବସିଥିବ।

କ'ଣ ତା' କମ୍ପାନୀର ନେଟ୍‌ରେ ନା ଅନ୍ୟ କୌଣସି ନେଟ୍‌ରେ ?

କିଏ ଜାଣେ ?

ହଉ - ସାଏନାକୁ ତମେ କହିଦିଅ, ଘରକୁ ଅଫିସ୍ ନକରୁ। କମ୍ପାନୀ କାମ ଅଫିସ୍ ସମୟରେ।

ଏହି ସମୟରେ କ୍ଲାନ୍ତ ଆଖିପତାକୁ ମଳଚି ମଳଚି ସାଏନା ପହଁଚିଲା ଡାଏନିଂ ଟେବୁଲ ପାଖରେ।

କ'ଣ ମାଆ ନେଟ୍‌ରେ ବସିଥିଲୁ ?

ହଁ - ଯେତେ ଯାହା କଲେ ବି ଏ କାମ ସରୁନି ବାପା।

କେଉଁ କାମ ?

ଅଫିସ୍ କାମ - ଆଉ କେଉଁ କାମ।

ଏଇଟା ତ ଘର - ତୋ' ଅଫିସ୍ ନୁହେଁ।

ମୁଁ ତ ବାପା ତମ ଭଳି ସରକାରୀ ଚାକିରୀ କରିନି ଯେ ଗୋଟିଏ ନିର୍ଦ୍ଦିଷ୍ଟ ଜାଗାରେ ମୋର ଅଫିସ୍ ରହିବ ଏବଂ ନିର୍ଦ୍ଧିଷ୍ଟ ସମୟରେ ଖୋଲିବ ଓ ବନ୍ଦ ହେବ। ତମେ ଅଫିସ୍ କହିଲେ ଯାହା ବୁଝ ଯଥା ଗୁଡାଏ ଫାଇଲ୍, ଟେବୁଲ, ଚେୟାର, ର୍‍ୟାକ୍, ଲେଜର, ରେଜିଷ୍ଟର ଇତ୍ୟାଦି ତାହା ଆଉ ଏବେ ନାହିଁ। ଆମ କମ୍ପାନୀ ଅଫିସକୁ ତମେ କେବେ ଆସିଲେ ଅଫିସ୍ ସଂପର୍କରେ ଥିବା ଧାରଣାଟି ତମର ସଂପୂର୍ଣ୍ଣ ବଦଳି ଯିବ।

ତମ ଅଫିସରେ କ'ଣ ଏସବୁ ଜିନିଷ କିଛି ନାହିଁ ନା କ'ଣ ?

ନା - ସବୁ ସଫ୍ଟ ଫାଇଲ୍ - ମାନେ କମ୍ପ୍ୟୁଟରରେ।

ସମଗ୍ର ବିଶ୍ୱ ଆମ କମ୍ପ୍ୟୁଟର ଭିତରେ।

ଚିଠି ପତ୍ର କରେସ୍‌ପୋଣ୍ଡେନ୍‌ସ କେମିତି ହୁଏ ?

ଇ-ମେଲରେ।

ହଉ ତୁ ବସ୍ ଖାଇନେ।

ସୁପ୍ ନେଉ ନେଉ ସାଏନା କହିଲା - ଭାବୁଛି ଏ ଇୟରଏଣ୍ଡିଂ ପରେ ଚାକିରି ଛାଡ଼ିଦେବି।

ବୋଉ ପଚାରିଲେ - କ'ଣ ବାପା କଥାରେ ରାଗିକରି ?

ନାଇଁ - ବାପାଂକ କଥାରେ ରାଗିବ କାହିଁକି, ମୋତେ ଆଉ ଭଲ ଲାଗୁନାହିଁ ଚାକିରି କରିବାକୁ।

ସାନ ଭାଇ ପଚାରିଲା - ଭଲ ଲାଗୁନାହିଁ ନା ଅନ୍ୟ କିଛି ?

ଅନ୍ୟ କିଛି ମାନେ କ'ଣ କହ ତ ?

ଏଇ ଯେମିତି ଅଫିସିଆଲ ହାରାସ୍‌ମେଣ୍ଟ, ସେକ୍‌ସୁଆଲ ହାରାସମେଣ୍ଟ, ବସିଜିମ୍ ଇତ୍ୟାଦି।

ନା - ସେସବୁ କିଛି ନୁହେଁ।

ତାହାଲେ ଚାକିରି ଛାଡ଼ିବୁ କାହିଁକି ?

ଇଚ୍ଛା ହେଉନି ଚାକିରି କରିବାକୁ, ଛାଡ଼ି ଦେବି। ଏଥିପାଇଁ ଗୋଟେ କୈଫତ୍ କ'ଣ ?

ତୋ' ମୁଣ୍ଡ ଫୁଣ୍ଡ ଠିକ୍ ଅଛି ତ ?

ମୁଣ୍ଡ ଠିକ୍ ନଥିଲା ବୋଲି ମୁଁ ଚାକିରିରେ ପଶିଥିଲି, ଏବେ ମୁଣ୍ଡ ଠିକ୍ ହେବାରୁ ଭାବୁଛି ଛାଡ଼ି ଦେବି।

ବାପା ଉଭୟଂକ କଥା ମଝିରେ ହସ୍ତକ୍ଷେପ କରି କହିଲେ - ଏଇଟା ଖାଇବା ବେଳ। ଆଗ ଖାଇସାର ପରେ ଏସବୁ ବିଷୟରେ ଆଲୋଚନା କରିବା। ସେ ତ କହିଲା ଇୟର ଏଣ୍ଡିଂ ବେଳକୁ ଚାକିରୀ ଛାଡ଼ିବ, ସେ ତ ବହୁତ ଦିନ ବାକି ଅଛି ନା, ଏବେ ଠୁ ଯୁକ୍ତି କାହିଁକି ?

ହଁ - ଆମେ ଖାଉଛୁ ବାପା। ଦେଖ ଏବେ ରିସେସନ୍ ଚାଲିଛି ବୋଲି ମୋର ସେଭେନ୍‌ଥ ସେମିଷ୍ଟର ସରିଲାଣି ଏପର୍ଯ୍ୟନ୍ତ କ୍ୟାମ୍ପସ ଆସିନି, ଅପା ସମୟରେ ଫିପ୍‌ଥ ଓ ସିକ୍‌ଥ ସେମିଷ୍ଟର ଭିତରେ କ୍ୟାମ୍ପସ ହୋଇ ଯାଉଥିଲା। ଆମେ ଏବେ ନିଶ୍ଚିତ ନୋହୁଁ ଯେ ଆମର କମ୍ପ୍ଲିଟ୍ ହେବା ପରେ ଆମକୁ ଚାକିରି ମିଳିବ କି ନାହିଁ।

ଯଦି ନ ମିଳେ ତେବେ ନିଜକୁ ଭାଗ୍ୟବାନ୍ ବୋଲି ମନେ କରିବୁ।

ହଁ - ତୁ ଏ କଥା କହିବୁ ନାହିଁ କାହିଁକି, ଚାକିରିଟା ତ ପାଇ ଯାଇଛୁ ନା।

ହଁ - ଚାକିରିଟା ପାଇଛି ବୋଲି ତ ଏକଥା କହିପାରିଲି।

ଓହୋ - ତୁ ତାହାଲେ ତୋ' ଚାକିରି ନେଇ ସନ୍ତୁଷ୍ଟ ନୋହୁଁ? କିଂତୁ ତୋ କମ୍ପାନୀ ତ ଭଲ ପେମେଣ୍ଟ ଦେଉଛି?

ଏଠି ମୁଁ ମୋ ଚାକିରି ନେଇ ସନ୍ତୁଷ୍ଟ - ଅସନ୍ତୁଷ୍ଟର କଥା ପଡିନି କିମ୍ବା ମୋ କମ୍ପାନୀ ଦେଉଥିବା ପେମେଣ୍ଟ କଥା ନୁହେଁ, କଥା ରହିଛି ଜୀବନର।

ତୁ କେମିତି କା ଜୀବନ ଚାହୁଁଛୁ କି?

ମୁଁ ଗୋଟେ ମଣିଷର ଜୀବନ ଚାହେଁ ମେସିନ୍‌ର ଜୀବନ ନୁହଁ ମେସିନ୍ ଜୀବନ!

ହଁ - ଏବେ କା ଚାକିରିରେ ମେସିନ୍ ଜୀବନ ନୁହେଁ ତ ଆଉ କ'ଣ? ଲକ୍ଷ୍ୟ-ଲକ୍ଷ୍ୟ, ଲକ୍ଷ୍ୟ ହାସଲ କର ଏବଂ କମ୍ପାନୀର ଆଭିମୁଖ୍ୟ ପୂରଣ କର।

ନଚେତ୍ କ'ଣ ମାଗଣାରେ ତମମାନଂକୁ ଏତେ ଏତେ ଦରମା ଦିଅନ୍ତା?

ତୋତେ ତାହାଲେ ଦରମାଟା ଦେଖାଯାଉଛି - କାମ ନୁହେଁ? ଆରେ ବାବା - କାମ କରିବାକୁ ତ ଦରମା ଦେଉଛି ନା।

ଆଚ୍ଛା ତୁ ସେ ଗପଟା ଶୁଣିଛୁ?

କେଉଁ ଗପ?

ଯେଉଁ ଗପରେ ଜଣେ ଲୋକ ସାଧୁବାବଙ୍କ ପାଖକୁ ଯାଇଚି ଏବଂ କହିଛି ମୁଁ ଜଣେ ଗରୀବ ଲୋକ, ମୋତେ ଧନୀ ହେବାର ବାଟ ବତ୍ତାନ୍ତୁ ବାବା। ବାବା ଲୋକଟିକୁ କିଛି ସମୟ ଚାହିଁବା ପରେ ପଚାରିଲେ - ତମେ କ'ଣ କରୁଛ? ଲୋକଟି ଉତ୍ତର ଦେଲା - କିଛି କରୁନି। ପୁଣି ବାପା ପଚାରିଲେ ତମ ପାଖରେ କ'ଣ ଅଛି? ଲୋକଟି କହିଲା ମୋ ପାଖରେ କିଛି ନାହିଁ।

ବାବା କହିଲେ ମୁଁ ତୁମକୁ ସାହାଯ୍ୟ କରିବି କିଂତୁ ଗୋଟିଏ ସର୍ତ୍ତରେ।

ଲୋକଟି କହିଲା - ମୁଁ ଆପଣଂକ ସବୁ ସର୍ତ୍ତରେ ରାଜି। ବାବା କହିଲେ ଠିକ୍ ଅଛି - ତମର ଗୋଟିଏ ହାତ ମୋତେ କାଟି କରି ଦିଅ - ଦଶ ହଜାର ପାଇବ, ଦୁଇ ହାତ ଦେଲେ କୋଡିଏ ହଜାର, ଗୋଡଟିଏ ଦେଲେ ପଚାଶ ହଜାର, ଦୁଇଗୋଡ ଦେଲେ ଲକ୍ଷେ, ଆକ୍ଷିଟିଏ ଦେଲେ ଦୁଇଲକ୍ଷ, ଦୁଇଟି ଆକ୍ଷି ଦେଲେ ଚାରିଲକ୍ଷ। ତମେ ଏସବୁ ଅଂଗପ୍ରତ୍ୟେଂଗରୁ ଯାହାକୁ ଚାହିଁବ ଦେଇ ମୋ ଠାରୁ ଟଂକା ନେଇପାର।

ଟଂକା ପାଇଁ ଏସବୁ କେମିତି ଦେଇ ହେବ ବାବା?

ତମର ପରା ଟଂକା ଦରକାର ?

ହଁ - ଯେ ଏସବୁ ଦେଲେ କେମିତି ହେବ ?

ଏବେ କହୁଥିଲ ତମ ପାଖରେ କିଛି ନାହିଁ ବୋଲି, ତମ ପାଖରେ ଥିବା ଜିନିଷର ମୂଲ୍ୟ ତ ମୁଁ କହିଲି ମାତ୍ର। ଏସବୁ ତମେ ତ କିଣିନ ନା ? ଈଶ୍ୱର ତମକୁ ଏତେ ମୂଲ୍ୟବାନ ଜିନିଷ ଦେବା ପରେ ବି ତମେ କହୁଛ ମୋ ପାଖରେ କିଛି ନାହିଁ କେମିତି।

ଲୋକଟି ତା' ଭୁଲ ବୁଝିପାରି ପରିଶ୍ରମ କରି ଧନୀ ହେବାର ଉପାୟ ବାହାର କଲା।

ହେଲା ଯେ, ତୋ ଗପ ଶୁଣିଲି, ଖୁବ୍ ଭଲ ବି ଲାଗିଲା, ହେଲେ ସେ ଗଳ୍ପଟିର ଉଦାହରଣ ଏଠାରେ କାହିଁକି ଦେଲୁ ଅପା ?

ଉଦାହରଣଟି ଏଇଥିପାଇଁ ଦେଲି ଯେ - ସେ ଲୋକଟି ଏତେ ଅର୍ଥପ୍ରାପ୍ତିର ପ୍ରତିଶୃତି ସତ୍ତ୍ୱେ ମଧ୍ୟ କୌଣସି ଅଂଗପ୍ରତ୍ୟେଂଗ ଦେବାକୁ ରାଜି ହେଲାନି, ଅଥଚ ଆମେ କିଛି ଅର୍ଥ ପାଇଁ ଆମର ଜୀବନ ଓ ଜୀବନର ସମସ୍ତ ସ୍ୱପ୍ନକୁ ବାଜି ଲାଗାଇ ଦେଉଛୁ କମ୍ପାନୀ ପାଇଁ।

ତୁ ତାହାଲେ ତୋ ଚ଼କିରିକୁ ଏନ୍‌ଜୟ କରିପାରୁନୁ ଅପା ?

ହଁ ସବୁ ମ୍ୟାନେଜମେଣ୍ଟର ସୂତ୍ର ବ୍ୟବସାୟ ବଢ଼ାଇବା ପାଇଁ, ଜୀବନ ଗଢ଼ିବା ପାଇଁ ନୁହେଁ। ମୁଁ ଜୀବନ ଚାହେଁ - ଜୀବନ। ସାଏନା ଓ ତା'ଭାଇର କଥାବାର୍ତ୍ତା ଓ ଯୁକ୍ତିତର୍କ ମଧ୍ୟରେ ନିଜ ନିଜର ଖାଇବା ସାରି ଉଠିଗଲେ ବାପା ଓ ବୋଉ। ନିଜ ବେଡ଼୍‌ରୁମ୍‌କୁ ପଶୁ ପଶୁ ସାଏନାର ମାଆ କହିଲେ - କେଉଁଠି କିଛି ଗୋଟିଏ ଅସୁବିଧା ହେଉଛି ନିଶ୍ଚୟ, ନଚେତ୍ ସାଏନା କାହିଁକି ଚାକିରି ଛାଡ଼ିଦେବା କଥା ଚିନ୍ତା କରୁଥାଆନ୍ତା ?

ହଁ - ଅସୁବିଧା ତ ହେଉଛି ନିଶ୍ଚୟ ?

କି ଅସୁବିଧା ହେଉଥିବ ବୋଲି ତମେ ମନେ କରୁଛ ?

ମଧ୍ୟବର୍ଗୀୟ ମାନସିକତାର ଅସୁବିଧା।

ମାନେ !

ଆମ ଶ୍ରେଣୀର ଲୋକମାନେ ମାଟି ସହ ଯେତିକି ଜଡ଼େଇ ହୋଇ ରହିବାକୁ ଚାହାନ୍ତି, ଆକାଶରେ ସେତିକି ଉଡିବାକୁ ଚାହାଁନ୍ତି। ସେଥିପାଇଁ ତାଂକ ଭିତରେ ଅହରହ ଲାଗିରହେ ଦ୍ୱନ୍ଦ।

ମୁଁ ଭାବୁଛି ଆମେ ଏବେ ସାଏନାର ବାହାଘର କରିଦେବାଟା ଠିକ୍ ହେବ। ତା'ର ମୁଡ୍ ଯେମିତି ସିଏ କେତେବେଳେ ଚାକିରି ଛାଡ଼ିଦେବ କିଏ ଜାଣେ ! ଚାକିରି ଛାଡ଼ି ଦେଲା କିଛି କଥା ନାହିଁ ଯେ, ହେଲେ ଚାକିରି ଛାଡ଼ିବା ପରେ ଗୋଟେ ଭଲ କ୍ୟାଣ୍ଡିଡେଟ୍ ମିଳିବ ନାହିଁ।

ଗତମାସ ଯେଉଁ ପିଲାଟା ଦେଖିବାକୁ ଆସିଥିଲା ଏବଂ ସାଏନାକୁ ପସନ୍ଦ କରିଥିଲା, ତା ଉପରେ ସାଏନା କ'ଣ ନିଷ୍ପତ୍ତି ନେଲା ?

ସେ କ'ଣ ତା' ନିଷ୍ପତ୍ତି ଶୁଣାଇଲାଣି । ତାକୁ ତ ଥରେ ପଚାରିଲି ତା' ମତାମତ କ'ଣ ବୋଲି, ସେ ମୋତେ ଓଲଟି ପଚାରିଲା ଯେ ବୋଉ ଯେଉଁ ପିଲାଟା ଆସିଥିଲା ସେ ବାହାହେବା ପାଇଁ ଆସିଥିଲା ନା ବ୍ୟବସାୟ କରିବାକୁ ଆସିଥିଲା ?

ମୁଁ ତାକୁ ବିସ୍ମୟ ହୋଇ ଚାହିଁବାରୁ କହିଲା, ବାହାହେବା ପାଇଁ ଝିଅ ଦେଖିବାକୁ ଆସିଥିବା ପିଲା ଝିଅ ଦେଖିସାରି ଝିଅର ରଚି, ସଉକ, ସ୍ୱପ୍ନ ଇତ୍ୟାଦି ବିଷୟରେ ନ ପଚାରି ସିଧା ପଚାରିଲା ତମ କମ୍ପାନୀର ପ୍ୟାକେଜ୍ କଣ ? କମ୍ପାନୀର ଅଫିସ୍ ସବୁ ଇଣ୍ଡିଆର କେଉଁ ସହରରେ ଅଛି ? ଫରେନ୍ ଅସାଇନ୍‌ମେଣ୍ଟର ସୁଯୋଗ ଅଛି ନା ନାହିଁ ? ତାଂକ ପ୍ରଶ୍ନରୁ ତ ମୋତେ ଲାଗିଲା ଯେ ସେ ସୁଖରେ ସଂସାର କରିବାକୁ ବିବାହ କରିବାକୁ ଚାହୁଁନାହାନ୍ତି, ଭବିଷ୍ୟତ ପାଇଁ ଏକ ରୀତିମତ ଯୋଜନା କରି ବିବାହ କରିବେ ।

ଯୁଗ ବଳଦିଗଲାଣି, ଯୁଗକୁ ଚାହିଁ ରଚି ଓ ଆବଶ୍ୟକତା ମଧ୍ୟ ବଦଳୁଛି । ତମ ଯୁଗର ପିଲାମାନେ ବି ସିଆଣା ହୋଇଗଲେଣି । ସେମାନେ ବିବାହର ବନ୍ଧନ ଅପେକ୍ଷା ବିବାହ ପରର ଆର୍ଥିକ ନିରାପତ୍ତା ଉପରେ ବିଶେଷ ଗୁରୁତ୍ୱ ଦେଉଅଛନ୍ତି । ତେଣୁ ତା'ର ଭୁଲ ରହିଲା କେଉଁଠି ? ତେବେ ତୋ'ର ତାକୁ ପସନ୍ଦ ହୋଇଛି ତ ?

ମୋର ପସନ୍ଦ ଅପସନ୍ଦର କଥା ଛାଡ଼, ଯଦି ମୁଁ ଚାକିରି ଛାଡ଼ିଦିଏ ତେବେ ସେ ମୋତେ ପସନ୍ଦ କରିବ କି ନାହିଁ ବୁଝ । ସେ ଯଦି କେବଳ ମୋ ଚାକିରି ପାଇଁ ମୋତେ ପସନ୍ଦ କରୁଥାଏ; ତେବେ ମୁଁ ଏ ବିବାହରେ ରାଜି ନୁହେଁ ।

ନିଷ୍ପତ୍ତି ଶୁଣାଇନାହିଁ ବୋଲି ତମେ ଭାବୁଛ କେମିତି ? ପଚାରିଲେ ସାଏନାର ବାପା । ତମେ କ'ଣ ଭାବୁଛ ସାଏନା ଚାକିରି ଛାଡ଼ିଦେଲେ ସେ ପିଲାଟା ରାଜି ହୋଇଯିବ ବାହାହେବାକୁ ? ମୋତେ ନୁହଁ । ପିଲାଟିର ପ୍ରଶ୍ନରୁ ତ ମୁଁ ଅନୁମାନ କରୁଛି ବିବାହ ନେଇ ତା'ର ରୀତିମତ ଏକ ବ୍ୟବସାୟିକ ଯୋଜନା ଅଛି । ସାଏନା ତ କିଛି ଭୁଲ୍ କହୁନି । ଯୁଗର ସ୍ରୋତରେ ସିନା ସାଏନା ଭାସି ଆସିଛି ଏତେ ବାଟ ଯାଏଁ, ହେଲେ ବିବାହ, ପତି-ପତ୍ନୀର ସଂପର୍କ ନେଇ ତା'ଭିତରେ ଯେଉଁ ପାରିବାରିକ ସଂସ୍କାରଟି ରହିଛି ତାକୁ ସେ ଏତେ ଶୀଘ୍ର ଦୂରେଇ ଦେଇ ପାରିବ କେମିତି ? କାହିଁକି ବା ଦୂରେଇ ଦେବ ? କୌଣସି ଦାୟିତ୍ୱ ନଥାଇ ବିବାହଟା କ'ଣ କେବଳ ଦେହଭୋଗ ? ସେଥିପାଇଁ ତ ବେଶ୍ୟାଳୟ ଅଛି, ବିବାହର ଆବଶ୍ୟକତା କ'ଣ ?

ତମେ ତ ଚାହିଁଲେ ଯୁଗର ସ୍ରୋତକୁ ବଦଳାଇ ଦେଇ ପାରିବନି ?

କାହିଁକି ନୁହେଁ, କେହି ଜଣେ ତ ହେଲେ ଏ ଦିଗରେ ଚେଷ୍ଟା କରିବା ଉଚିତ, ଆଉ ସେ ଜଣକ ମୁଁ କାହିଁକି ନହେବି କିମ୍ବା ସାଏନା କାହିଁକି ନହେବ ?

ହଉ ବାବା - ତମେ ବାପ ଝିଅ ମିଶି କ'ଣ ନିଷ୍ପତ୍ତି ନେଉଛ ନିଅ। ମୋତେ ନିଦ ଲାଗିଲାଣି, ମୁଁ ଶୋଇଲି।

ପରଦିନ ସକାଳୁ ଢ଼େର ସମୟ ଯାଏଁ ଖୋଲି ନଥିଲା ସାଏନା ରୁମର କବାଟ। ରାତି ସାରା ନେଟ୍‌ରେ ବସି କାମ କରି ଥକି ଯାଇ ବୋଧେ ଶୋଇଛି, ଶୋଇ ଥାଉ, ଉଠାଇବି କାହିଁକି ବୋଲି ଭାବୁଥିଲେ ତା'ର ମାଆ। ସାତଟା ଗଲା, ଆଠଟା ବାଜିଲା, ଆଠଟା ଯାଇ ନଅ ବାଜିବାରୁ ଆଉ ସମ୍ଭାଳି ନ ପାରି ଡାକିଲେ - ସାଏନା ତୋ'ର ଆଜି ଅଫିସ୍ ନାହିଁକି ? ବିଳମ୍ବ ଜନୀତ କୌଣସି ବ୍ୟଗ୍ରତା ନ ଦେଖାଇ ଆଖିମଳି ମଳି ଉଠିଲା ସାଏନା। ବେସିନ୍ ପାଖରେ ମୁହଁ ଧୋଉଁ ଧୋଉଁ କହିଲା - ଆଉ ଟିକିଏ ସବୁର କରି ପାରିଲୁନି ମାଆ, କି ସୁନ୍ଦର ସ୍ୱପ୍ନଟିଏ ଦେଖୁଥିଲି ତାକୁ ଭାଂଗି ଦେଲୁ।

କି ସ୍ୱପ୍ନ ଦେଖୁଥିଲୁ ?

ବାହାଘର ସ୍ୱପ୍ନ।

କାହା ବାହାଘର ?

ମୋ ବାହାଘର, ଆଉ କାହାର ବାହାଘର ସ୍ୱପ୍ନ ମୁଁ କାହିଁକି ଦେଖିବି ? କ'ଣ ସ୍ୱପ୍ନ ଦେଖୁଥିଲୁ ?

ସ୍ୱପ୍ନ ଦେଖୁଥିଲି - ବେଦୀରେ ବସି ପୁରୋହିତଙ୍କ ମନ୍ତ୍ର ପାଠରେ ମୋ ବାହାଘର ହେଉଛି। ମୁଁ ବୋହୁ ହୋଇ ସବାରୀରେ ବସି ଶାଶୁଘରକୁ ଯାଉଛି। ସେଠି ମୋର ଶାଶୁ, ଶଶୁର, ନଣନ୍ଦ, ଦିଅର ସହ ଆହୁରି କେତେକେତେ ସଂପର୍କୀୟ ଅଛନ୍ତି। ମୁଁ ମୁଣ୍ଡରେ ଓଢ଼ଣା ଟାଣି, ପାଦରେ ଅଳତା ଓ ପାଉଁଜି ପିନ୍ଧି ନୂଆ ବୋହୁ ହୋଇଛି। ସେ ଘରଟିରେ ଏମିତି ଗ୍ୟାସ ଫ୍ୟାସ୍ ନାହିଁ କି ଡାଏନିଂ ଟେବୁଲ ନାହିଁ। ମୁଁ ଚୂଲିରେ ରୋଷେଇ କରି ପରଶି ଦେଉଛି, ସମସ୍ତେ ବସି ଖାଉଛନ୍ତି ଓ ମୋ ହାତ ରନ୍ଧାକୁ ଢ଼େର ତାରିଫ୍ କରୁଛନ୍ତି। ଦିନ ତମାମ ମୁଁ ସମସ୍ତଙ୍କୁ ଦେଖୁଥିଲି ହେଲେ ମୋ ସ୍ୱାମୀ ନାମକ ମଣିଷଟିକୁ ଦେଖି ପାରୁନଥିଲି। ରାତିରେ ମୁଁ ଅପେକ୍ଷା କରିଛି ସେ ଆସିବା ପାଇଁ। ସେ ଆସୁଥିଲେ ହେଲେ ତୁ ଡାକି ଦେଲୁ ଯେ ମୋ ନିଦ ଭାଂଗିଗଲା।

ଆରେ ତୁ ଏତେ ସୁନ୍ଦର ସ୍ୱପ୍ନ ଦେଖୁଥିଲୁ ବୋଲି ମୁଁ କ'ଣ ଜାଣିଛି। ମୁଁ ଭାବିଲି ତୋ' ଅଫିସ୍ ଡେରୀ ହୋଇଯିବ, ଡାକି ଦିଏ।

ଅଫିସ୍ ! କେଉଁ ଅଫିସ୍ ? ତାକୁ ପରା କାଲିରାତିରେ ଶୋଇବା ପୂର୍ବରୁ ମୁଁ ଛାଡ଼ି ଦେଲି। ମୋ ରେଜିଗନେସନ୍‌କୁ ମୁଁ ଇ-ମେଲ କରି ଦେଇଛି।

ତୁ ପରା କହୁଥିଲୁ ଇୟର ଏଣ୍ଡିଂରେ ଛାଡ଼ିବୁ ବୋଲି ?

ହଁ - କହୁଥିଲି, ପରେ ଭାବିଲି ଚାକିରି ଛାଡ଼ିନି ଯଦି ତେବେ ଇୟର ଏଣ୍ଡିଂ ଯାଏଁ ଅପେକ୍ଷା କରିବି କାହିଁକି ? ଜୀବନ ଯଦି ଖୋଜିବି ତେବେ ଆଜିଠୁ କାହିଁକି ନୁହେଁ ?

ତାହାଲେ ତୁ ଜୀବନ ଅନ୍ୱେଷାରେ ଚାକିରି ଛାଡ଼ି ଦେଲୁ ?

ହଁ ବୋଉ - ସେଇଆ ନୁହେଁ ତ ଆଉ କ'ଣ ! ସୁଖର ଅନ୍ୱେଷାରେ ଅବସରକୁ ସଉଦା କରି କେତେ କାଳ ଆଉ ଜୀବନ ଖୋଜିଥାଆନ୍ତି ଯେ ?

ତୁ' ତାହାଲେ କେମିତିକା ଜୀବନ ଚାହୁଁ ?

ତୋତେ ଆଉ କେତେ ଖୋଲିକରି କହିବି - ତୁ, ପରା ମାଆ, ଝିଅର ମନ କଥା ଓ ସ୍ୱପ୍ନ କଥା କିଛି ବୁଝି ପାରୁନୁ କେମିତି ?

ହେଲେ ତୋ' ସ୍ୱପ୍ନର ଜୀବନ ଓ ବାସ୍ତବ ଜୀବନର ସତ୍ୟତା ମଧ୍ୟରେ ଥିବା ଫରକଟିକୁ ତୁ ଜାଣିନୁ !

ଜାଣେ । ମୁଁ ଚଳି ପାରିବି ନାହିଁ ବୋଲି ତମେ କାହିଁକି ଭାବୁଛ ? ମୁଁ ପରା ମ୍ୟାନେଜ୍‌ମେଣ୍ଟ କରିଛି, ସବୁ ମ୍ୟାନେଜ୍ କରିବାର ଶିକ୍ଷା ଓ କୌଶଳ ମୋତେ ଜଣା । ମୋର ଏ ତଥାକଥିତ ସୁଖ ସ୍ୱାଚ୍ଛନ୍ଦ କିଛି ଲୋଡ଼ା ନାହିଁ, ତମେ କେବଳ ମଣିଷଟିଏ ଖୋଜ, ଯିଏ ମନର ମଣିଷ ହୋଇ ପାରିବ, ଧନର ମଣିଷ ନୁହେଁ, ଭଲ ପାଇବାର ହୃଦୟଟିଏ ଥିବ, ବାସ୍ ମୋର ଆଉ କିଛି ଲୋଡ଼ା ନାହିଁ ।

***



ରାଜ୍ୟବର୍ଦ୍ଧନ ଧଳ ମହାପାତ୍ର ସମକାଳୀନ ଓଡିଆ କଥା ସାହିତ୍ୟର ଏକ ସ୍ମରଣୀୟ ସଂଯୋଗ ଓ ଶ୍ରଦ୍ଧାଶୀଳ ଉଚ୍ଚାରଣ । କଥାବସ୍ତୁ ଚୟନ ଚରିତ୍ର ନିର୍ମାଣ ତଥା ପରିବେଶ ଚିତ୍ରଣର ଅନନ୍ୟ ଶୈଳୀରେ ସେ ପାଠକଙ୍କୁ ଏପରି ମୋହାବିଷ୍ଟ କରନ୍ତି ଯେ, ଥରେ ତାଙ୍କର କଥା ସାମ୍ରାଜ୍ୟକୁ ପ୍ରବେଶ କଲେ ସହଜରେ ମୁକୁଳି ପାରନ୍ତିନି ତାଙ୍କର ଯାଦୁକରୀ ଅବେଗରୁ । ଅତି ନିକଟରୁ ନିରେଖି ଦେଖିଥିବା ଜୀବନାୟନର ଅନୁଭୂତିରେ ତାଙ୍କର କଥାସୃଷ୍ଟି ଯେତିକି ବାଙ୍ମୟ, ସେତିକି ବିଗଳିତ । ଜୀବନର ନାନାବିଧ ଅନୁଭବ ଓ ଅନୁଭୂତି, ସପ୍ନ ଓ ସପ୍ନଭଂଗ, ଆଶା ଓ ହତାଶା, ଜିଜ୍ଞାସା ଓ ଜିଜୀବୀଷାକୁ ନେଇ ବିଗତ ତିନି ଦଶନ୍ଧୀରୁ ଉର୍ଦ୍ଧ୍ୱକାଳ ଧରି ନିରନ୍ତର ସାଧନାରତ ରାଜ୍ୟବର୍ଦ୍ଧନଙ୍କର "ଇଚ୍ଛାପତ୍ର" ନବମ ଗଳ୍ପ ସଂକଳନ ।

ଅଶୋକ ମହାନ୍ତି, ପ୍ରକାଶକ

**ଲେଖକଙ୍କ ଅନ୍ୟାନ୍ୟ କୃତି**

**ଗଳ୍ପ ସଂକଳନ**

ସବୁଜ ପତ୍ରରେ ସୂର୍ଯ୍ୟାସ୍ତର ରଂଗ
ଦୌଡ ପ୍ରତିଯୋଗିତା
ଅଥଳ ଆଶ୍ରୟ
ଦୂର ନକ୍ଷତ୍ର
ତଥାସ୍ତୁ
ବାମନ ବୃକ୍ଷ
ମାଟିଦ୍ରୋଣ
ମାୟାଚିତ୍ର

**ଉପନ୍ୟାସ**

ହୃଦୟର ସୀମାରେଖା
ପୁଣ୍ୟ ପତିତା
ବେଳ ଭଲନାହିଁ



**ICHHAPATRA**
Story Collection by
Rajyabardhan Dhalmahapatra
Published by
Paschima Publications, Bhubaneswar
Cover : Ashok Mohanty
Printed at
Duduly Process and Offset,
Bhubaneswar
1st Edition : 2017

Email:
paschima1990@yahoo.com





ISBN: 978-81-89098-17-9

₹.100.00